ପ୍ରକାଶକ : ମନୋଜ କୁମାର ମହାପାତ୍ର
**ଗ୍ରନ୍ଥମନ୍ଦିର,** ବିନୋଦବିହାରୀ, କଟକ-୨

ମୁଦ୍ରକ : ଲିପିକାର, ଝାଞ୍ଜିରିମଙ୍ଗଳା, କଟକ-୯

ପ୍ରଥମ ସଂସ୍କରଣ : ଏପ୍ରିଲ୍, ୧୯୯୧

ମୂଲ୍ୟ : ୫୮-୦୦

# ଜଙ୍ଗଲ ରାଜା

## ଶାନ୍ତର ଜଙ୍ଗଲରେ ଅଶାନ୍ତ

ଏହା ହେଉଛି ଗୋଟିଏ ବଡ଼ ଜଙ୍ଗଲର କଥା । ତା ଭିତରେ ସିଂହ, ବାଘ, ଭାଲୁ, ହାତୀ, ଭାଲୁଆ, ମାଙ୍କଡ଼, କୁକୁର, ମୟୂର, ଶୁଆ, ଶାରୀ, ଚଢ଼େଇ, କୁଆ ପ୍ରଭୃତି କେତେ ପ୍ରକାର ପଶୁପକ୍ଷୀ ଯେ ରହୁଛନ୍ତି କେହି ତା'ର ହିସାବ କରିପାରିବ ନାହିଁ । ପଶୁରାଜ ସିଂହକୁ ସମସ୍ତେ ଜଙ୍ଗଲର ରାଜା ବୋଲି ମାନନ୍ତି ।

ସିଂହ ରାଜାଙ୍କ ଶାସନରେ ଜଙ୍ଗଲ ଭିତରେ ସବୁପ୍ରକାର ପଶୁପକ୍ଷୀ ଖାଇପିଇ ବେଶ୍ ସୁଖ ଶାନ୍ତିରେ ଥାଆନ୍ତି । କାହାରି ଭିତରେ କେବେ କିଛି ଝଗଡ଼ା କି କଳିଗୋଳ ହେଲେ ସିଂହରାଜାଙ୍କ କାନଯାଏ କଥା ଆସିବା ଆଗରୁ ବାଘମନ୍ତ୍ରୀ ଓ ବଡ଼ ସିପାହୀ ଭାଲୁଆମାନେ ସେ ସବୁର ସମାଧାନ କରିଦିଅନ୍ତି ।

ଏତେ ବଡ଼ ଜଙ୍ଗଲ । ଯୁଆଡ଼େ ଗଲେ ବି ପଶୁପକ୍ଷୀମାନେ ଏକ ମେଳ ହୋଇ ଶହ ଶହ ସଂଖ୍ୟାରେ ସାଙ୍ଗହୋଇ ବୁଲନ୍ତି । ଏକାବେଳକେ ଶହେ-ଦୁଇଶହ ମାଙ୍କଡ଼ ବୁଲୁଥିବେ । ଏ ଗଛ ସେ ଗଛ ଡେଇଁ ଫୁଲଫଳ ଖାଉଥିବେ । ବରଗଛର ଓହଳରେ ଦୋଳି ଖେଳୁଥିବେ । ଭାଲୁ, ହରିଣ, ଠେକୁଆ, ଶିଆଳ, କୁକୁରମାନେ ଏକାଠି ଶହ ଶହ ସଂଖ୍ୟାରେ ସାଙ୍ଗହୋଇ ବୁଲୁଥିବେ । ଆଉ ଚଢ଼େଇମାନଙ୍କୁ ତ ଗଣିହେବନାହିଁ । ହଜାର ହଜାର ସଂଖ୍ୟାରେ ଶୁଆ ଶାରୀ, କପୋତ, ଡାହୁକ, କଜଳପାତି, ହଳଦୀବସନ୍ତ, ଆଉ କେତେ ପ୍ରକାରର ନାଲି, ନେଳି, ଶାଗୁଆ ମାଟିଆ ରଙ୍ଗର ଛୋଟ ବଡ଼ ଚଢ଼େଇମାନେ ଏକାଠିହୋଇ ଉଡ଼ି ଉଡ଼ି ବୁଲୁଥିବେ ଯେ ଦେଖିଲେ ମନ ଖୁସିହୋଇଯିବ ।

ଜଙ୍ଗଲ ଭିତରେ ଏସବୁର ହିସାବ କେବଳ ଭାଲୁଆ ସିପାହୀମାନେ ଜାଣନ୍ତି । ସବୁ ପଶୁପକ୍ଷୀଙ୍କର ଭଲମନ୍ଦ, କାହା ଘରେ କିଏ ଜନ୍ମହେଲା ବା କିଏ କ'ଣ ପାଇଁ କୋଉଠି ମଲା ଏସବୁ ଖବର ଭାଲୁଆମାନଙ୍କଠାରୁ ଶୁଣିବାକୁ ମିଳେ । ସିଂହରାଜା

ଓ ବାଘମନ୍ତ୍ରୀଙ୍କୁ କେବଳ ବଲୁଆମାନେ ଏ ସବୁର ଖବର ଦିଅନ୍ତି ।

ଜଙ୍ଗଲ ବାହାରର କେହି ଅଜଣା ପଶୁପକ୍ଷୀ ଯଦି କେବେ ଶତ୍ରୁ ବା ମିତ୍ର ଭାବରେ ଆସି ଜଙ୍ଗଲରେ ପହଞ୍ଚିଯାଏ, ସେ ଖବର ମଧ୍ୟ ବଲୁଆମାନେ ଚଟାପଟ୍ ଜାଣିପାରି ତାଙ୍କର ଦଳପତି ବଲୁଆନନାକୁ କହିଦିଅନ୍ତି । ତା'ପରେ ସେମାନେ ଯାଇ ବାଘମନ୍ତ୍ରୀ ଓ ସିଂହରାଜାଙ୍କୁ ଖବର ଦେଇ ଆସନ୍ତି । ଏହି ଅଜଣା ପଶୁପକ୍ଷୀ ଯଦି ଶତ୍ରୁ ଭାବରେ ଆସିଥାଆନ୍ତି, ସାଙ୍ଗେ ସାଙ୍ଗେ ସେମାନଙ୍କ ସହିତ ଲଢ଼େଇ କରି ଜଙ୍ଗଲରୁ ତଡ଼ିଦିଆଯାଏ । କିନ୍ତୁ କେହି ଯଦି ବନ୍ଧୁ ଭାବରେ ଆସି ପହଞ୍ଚିଥାଏ, ତାହାହେଲେ ତାକୁ ବହୁତ ଆଦର ଯତ୍ନ କରି ଜଙ୍ଗଲରେ ଖୁଆଇ ପିଆଇ ଆରାମରେ ରଖାଯାଏ ।

ଏହି ଜଙ୍ଗଲ ଭିତରେ କେଉଁଠି ପାହାଡ଼ ଅଛି ଓ କେଉଁସବୁ ପାହାଡ଼ ପାଖେ ମିଠା ପାଣିର ଝରଣା ବହିଯାଉଛି, କେଉଁ ଜାଗାରେ ସୁନ୍ଦର ଫୁଲ ଓ ମିଠା ଫଳର ଗଛ, କେଉଁଠି ଖଟା, କଷା, ପିତା ଫଳର ଗଛ ଅଛି, ଏସବୁର ଖବର ମଧ୍ୟ ବଲୁଆମାନେ ଠିକ୍ ଜାଣନ୍ତି । ତା'ଛଡ଼ା ଜଙ୍ଗଲର କେଉଁ ପାଖରେ ବାଘମାନେ ରହନ୍ତି, କେଉଁ ପାଖରେ ହାତୀ, ଘୋଡ଼ା, ମାଙ୍କଡ଼, ଭାଲୁ ପ୍ରଭୃତି ରହନ୍ତି ଓ ଅନ୍ୟାନ୍ୟ ପଶୁପକ୍ଷୀ କିଏ କେଉଁଠି ଘରକରି ରହନ୍ତି ସେ ସବୁର ଖବର କେବଳ ଏହି ବଲୁଆମାନେ ଠିକ୍ ଠିକ୍ କହିପାରନ୍ତି ।

ପଶୁପକ୍ଷୀମାନେ ସେମାନଙ୍କର ସୁବିଧା ଅସୁବିଧା ଭଲମନ୍ଦ ଖବର ସିଧାସଳଖ ଯାଇ ସିଂହରାଜା ବା ବାଘମନ୍ତ୍ରୀଙ୍କୁ କହିପାରନ୍ତି ନାହିଁ । ସିଂହରାଜାଙ୍କର କେଶର-ଭରି ମୁହଁଟାକୁ ଦେଖିଲେ ସମସ୍ତେ ଡରନ୍ତି । ବାଘମନ୍ତ୍ରୀଙ୍କର ଚେହେରା ଓ ଗର୍ଜନକୁ ମଧ୍ୟ ସମସ୍ତଙ୍କର ଭାରି ଭୟ । ତାଙ୍କ ସାମନାକୁ ବା ଯିବ କିଏ ? ତେଣୁ ବଲୁଆମାନଙ୍କୁ ନିଜନିଜର ସବୁ ଖବର ସେମାନେ ଶୁଣାଇ ଦିଅନ୍ତି । ଏହିପରି ଜଙ୍ଗଲ ରାଜ୍ୟ ବୁଝିବା ଭାର ବଲୁଆମାନଙ୍କ ଉପରେ ଦେଇ ସେଠିକାର ପଶୁପକ୍ଷୀମାନେ ବେଶ୍ ମନ ମଉଜରେ ଖାଇପିଇ ମହା ଆରାମରେ ଜଙ୍ଗଲ ଭିତରେ ଥାଆନ୍ତି ।

ତେଣୁ ସେ ଜଙ୍ଗଲ ଭିତରେ ବଲୁଆମାନଙ୍କର ଭାରି ଖାତିର । ପଶୁପକ୍ଷୀମାନଙ୍କ ଭିତରେ ଏକତା ଥାଏ । ସେମାନେ ଏକମନ ହୋଇ ଚଳନ୍ତି । ବଲୁଆ-ମାନଙ୍କ କଥା ସମସ୍ତେ ମାନନ୍ତି । କିଛି ଜରୁରୀ କାମ ପଡ଼ିଲେ ବଲୁଆମାନେ ଯଦି

ଖବର ଦିଅନ୍ତି, ତା'ହେଲେ ଶହ ଶହ ସଂଖ୍ୟାରେ ପଶୁପକ୍ଷୀ ଆସି ପହଞ୍ଚିଯାଆନ୍ତି । ସିପାହିମାନଙ୍କ ଦଳପତି ବଲୁଆନନାର କଥା ମାନି ଯାହାକୁ ଯାହା କାମ ଦିଆଯାଏ, ସାଙ୍ଗେ ସାଙ୍ଗେ ସେ କାମ କରିଦିଅନ୍ତି । ମୁଖ୍ୟ ବଲୁଆନନା ରାଜା ଓ ମନ୍ତ୍ରୀଙ୍କୁ ମଧ୍ୟ ସବୁ କଥାରେ ପରାମର୍ଶ ଦିଅନ୍ତି ।

ଥରେ କଣ ହେଲା ନା, ଜଙ୍ଗଲର ଗୋଟିଏ ପାଖ ସୀମାରେ ମଣିଷମାନେ ଆସି ପହଞ୍ଚି ଗଛ କଟାକଟି କଲେ । ମଣିଷମାନଙ୍କ ପାଟିତୁଣ୍ଡ ସାଙ୍ଗେ ସାଙ୍ଗେ ଗଛକଟା ହେବାର ଦୁମ୍‌ଦାମ୍ ଶବ୍ଦ ଶୁଭିଲା । ଗାଡ଼ି, ମଟରର ପେଁ ପାଁ, ଭେଁ ଭାଁ ଶବ୍ଦ ଶୁଭିଲା । କେତେକ ପଶୁପକ୍ଷୀ ଏସବୁ ଦେଖି ଶୁଣି ଯାଇ ବଲୁଆମାନଙ୍କୁ ଖବର ଦେଲେ । ଚାହୁଁ ଚାହୁଁ ଅଳ୍ପ ସମୟ ଭିତରେ ଜଙ୍ଗଲସାରା ଏ ଖବର ଯା କାନକୁ ତା କାନ ହୋଇ ସିଂହରାଜା ଓ ବାଘମନ୍ତ୍ରୀ ମଧ୍ୟ ଜାଣିଗଲେ । ବଲୁଆ-ମାନେ ଖବର ପଠାଇ ପଶୁପକ୍ଷୀମାନଙ୍କୁ ଏକଜୁଟ କଲେ । ରାଜା ଓ ମନ୍ତ୍ରୀ ବସି ପଶୁପକ୍ଷୀମାନଙ୍କର ଏକ ବଡ଼ ସଭା ହେଲା । ସମସ୍ତଙ୍କୁ ଚୁପ୍‌ଚାପ୍ ବସିବାକୁ କହି ବଲୁଆମାନେ ଜଗିରହିଲେ ।

ପଶୁରାଜ ସିଂହ ପଶୁପକ୍ଷୀମାନଙ୍କୁ କହିଲେ, "ଆମର ଏ ଜଙ୍ଗଲ ଉପରେ ଏବେ ମଣିଷମାନଙ୍କର ଆଖି ପଡ଼ିଛି । ସେମାନେ ଜଙ୍ଗଲର ଗୋଟାଏ ପାଖରୁ ଗଛ କଟାକଟି କରିବା ଆରମ୍ଭ କରିଛନ୍ତି । ଏଇ ମଣିଷମାନେ ଭାରି ଚାଲାକ୍ । ଆମେ ଶୁଣିବାକୁ ପାଉଛୁ ସେମାନେ କେତେ କ'ଣ ଯନ୍ତ୍ର ସବୁ ଗାଡ଼ି ମଟରରେ ଲଦି ଗଛ କାଟିବାକୁ ଆଣିଛନ୍ତି । ଆସ୍ତେ ଆସ୍ତେ ସେମାନେ ଆମର ପୂରା ଜଙ୍ଗଲଟାକୁ କାଟିକୁଟି ସଫା କରି ଦେଇପାରନ୍ତି । ଏ ବିଷୟରେ ବଲୁଆନନା ତୁମମାନଙ୍କୁ ବୁଝାଇଦେବ । ଆମକୁ ଆମର ଜଙ୍ଗଲରାଜ୍ୟକୁ ରକ୍ଷା କରିବାକୁ ହେବ । ତୁମେମାନେ ସହ-ଯୋଗ କଲେ ଆମ ରାଜ୍ୟର କିଛି କ୍ଷତି ହେବନାହିଁ ।"

ବଲୁଆନନା କହିଲା, "ମଣିଷମାନେ ଚାହିଁଲେ ପାହାଡ଼ ପର୍ବତ ମଧ୍ୟ ଭାଙ୍ଗିଚୂରି ସମତଳ କରିଦେବେ । ଜଙ୍ଗଲ ସଫା ହୋଇଗଲା ପରେ ସେମାନେ ଏଠି ଘରଦ୍ୱାର, ସହରବଜାର, ସ୍କୁଲ କଲେଜ, ଅଫିସ ପ୍ରଭୃତି ତିଆରି କରି ଆରାମରେ ରହିବେ । ଏମିତି କେତେ ଆଡ଼େ କେତେ ସୁନ୍ଦର ସୁନ୍ଦର ଜଙ୍ଗଲ ସେମାନେ କାଟି ସଫା କରି ସେମାନଙ୍କ କାମରେ ଲଗାଉଛନ୍ତି । ଆମମାନଙ୍କ କଥା ସେମାନେ ଟିକିଏ ବି ଭାବୁନାହାନ୍ତି । ଆମମାନଙ୍କର ଘର ଭାଙ୍ଗିଲେ, ଆମେମାନେ କୁଆଡ଼େ

ଯିବା ? ମଣିଷମାନଙ୍କର ବହୁତ ବୁଦ୍ଧି ଅଛି ସତ, କିନ୍ତୁ ସେମାନେ ବୁଝୁନାହାନ୍ତି ଯେ ଏହି ଜଙ୍ଗଲ ଥିବାରୁ ଆମର ଉପକାର ହେବା ସଙ୍ଗେ ସଙ୍ଗେ ସେମାନଙ୍କର ମଧ୍ୟ ବହୁତ ଉପକାର ହେଉଛି । ତେଣୁ ମୁଁ ଆଜି ସବୁ ପଶୁପକ୍ଷୀ ଭାଇ-ଭଉଣୀମାନଙ୍କୁ ଅନୁରୋଧ କରୁଛି—ଆମେମାନେ ଏକମନ ହୋଇ କାମ କରି ମଣିଷମାନଙ୍କ ହାତରୁ ଏହାକୁ ରକ୍ଷା କରିବା ।"

ଭାଲୁଆନନାର କଥା ସରିବା ମାତ୍ରେ ସିଂହରାଜା, ବାଘମନ୍ତ୍ରୀ ଓ ଅନ୍ୟ ପଶୁପକ୍ଷୀମାନେ ପାଟିତୁଣ୍ଡ କରି ନିଜନିଜର ସମର୍ଥନ ଜଣାଇଲେ । ଗଛ ଉପରେ ରହି ହନୁମାଙ୍କଡ଼ମାନେ ହୁଁ ହାଁ ରଡ଼ି ଛାଡ଼ିଲେ । ଚଢ଼େଇମାନେ ମଧ୍ୟ କେଁ କାଁ ଚେଁ ଚାଁ ଶବ୍ଦ କରି ନିଜନିଜର ମନକଥା ଜଣାଇଲେ ।

ଏଥର ସିଂହରାଜା କହିଲେ, "ତାହେଲେ ତୁମେମାନେ ଆଉ ଡେରି କରନାହିଁ । ନିଜ ନିଜ ଦଳରୁ ବେଶ୍ ଲଢ଼ୁଆ, ତାଗଡ଼ା ପଶୁପକ୍ଷୀମାନଙ୍କୁ ବାଛି ଭାଲୁଆନନା ସାଙ୍ଗରେ ଜଙ୍ଗଲ କଟା ହେଉଥିବା ଜାଗାକୁ ପଠାଅ । ବାଘମନ୍ତ୍ରୀଙ୍କ ଦଳରୁ ମଧ୍ୟ କେତେଜଣ ଯିବେ । ଭାଲୁଆନନା ଯେପରି କହିବ ସେପରି କାମ କରିବେ । ଅନ୍ୟ ପଶୁମାନେ ଜଙ୍ଗଲ ଭିତରେ ସଜାଗ ଥିବେ, ଦରକାର ହେଲେ ପରେ ସେମାନେ ଯିବେ । ଏବେ ଡେରି ନକରି ଶୀଘ୍ର ବାହାରିପଡ଼ ।"

ସିଂହରାଜାଙ୍କ କଥା ସରିବା ବେଳକୁ ସମସ୍ତେ ନିଜ ନିଜ ଦଳର ଲଢ଼ୁଆ ପଶୁପକ୍ଷୀମାନଙ୍କୁ ବାଛିସାରିଥିଲେ । ତେଣୁ ଆଉ ଡେରି ନକରି ସେମାନେ ଭାଲୁଆନନାଙ୍କ ସାଙ୍ଗରେ ବାହାରି ପଡ଼ିଲେ । ବୁଢ଼ାବୁଢ଼ୀ ପଶୁପକ୍ଷୀମାନେ ଏମାନଙ୍କୁ ଆଶୀର୍ବାଦ କଲେ ।

ଜଙ୍ଗଲର ସୀମା ବହୁତ ଦୂର । ସେଠାରେ ପହଞ୍ଚିବାକୁ ପ୍ରାୟ ଦୁଇଦିନ ଲାଗିଯିବ । ପଶୁପକ୍ଷୀମାନେ ଆଗେଇ ଚାଲିଥାଆନ୍ତି । ଦିନସାରା ଚାଲନ୍ତି—ରାତି ହେଲେ ବିଶ୍ରାମ ନିଅନ୍ତି । ବାଟରେ ଭାଲୁଆନନା ସମସ୍ତଙ୍କୁ ପୁଣି ବୁଝାଇ କହିଲା— ଦେଖ, ତୁମେମାନେ ସବୁ ମିଶି ମଣିଷମାନଙ୍କୁ ଏଭଳି ଡରାଇବା କରିବ ଯେପରି ସେମାନେ ଛୁଟିପିଟି ହୋଇ ଜଙ୍ଗଲ ଛାଡ଼ି ପଳାଇବେ । କିନ୍ତୁ ସେମାନଙ୍କୁ ଡରାଇବା କରିବାକୁ ହେଲେ ବହୁ ଭାବ ବିଚାର କରିବାକୁ ପଡ଼ିବ, କାରଣ ସେମାନଙ୍କ ପାଖେ ବନ୍ଧୁକ ଅଛି । ନିଜକୁ ରକ୍ଷା କରିବାକୁ ସେମାନେ ବନ୍ଧୁକ ଫୁଟାଇବେ, ଫଳରେ ଟିକେ ଅସାବଧାନ ହେଲେ ଆମ ପଶୁପକ୍ଷୀମାନଙ୍କର ଜୀବନ ଯାଇପାରେ ।

ଏକଥା ଶୁଣି ହାତୀ, ବାଘ, ଭାଲୁ, ମାଙ୍କଡ଼, ନେଉଳ, ବଘଡ଼, କୁକୁର, ଠେକୁଆ ଆଦି ଜନ୍ତୁମାନେ ନଣ ମୋଡ଼ ଆଗକୁ ଚାଲିଆସିଲେ । ସେମାନେ ଏକାଠି ହୋଇ କହିଲେ—ଆମର ଏ ଜଙ୍ଗଲ ରାଜ୍ୟକୁ ରକ୍ଷା କରିବା ପାଇଁ ଆମର ଜୀବନ ଗଲେ ମଧ୍ୟ ଆମେ ଡରିବୁ ନାହିଁ । ସାପମାନେ ସେମାନଙ୍କର ଫଣା ଟେକ ଠିଆ-ହୋଇଗଲେ । ସମସ୍ତଙ୍କ ମନର ବଳ ଦେଖି ବଲୁଆନନାର ମଧ୍ୟ ସାହସ ବଢ଼ିଗଲା । ଏଥର ଡେରି ନକରି ପୁଣି ସମସ୍ତେ ଆଗେଇ ଚାଲିଲେ ।

## ମଣିଷମାନେ ଜଙ୍ଗଲରୁ ତଡ଼ା ଖାଇଲେ

ଜଙ୍ଗଲ ସୀମାରେ ମଣିଷମାନଙ୍କର ଗଛ କଟାକଟି କାମ ବେଶ୍ ଜୋର୍‌ସୋର୍‌ରେ ଚାଲିଥାଏ । ପଶୁପକ୍ଷୀମାନେ ଯାଇ ସେ ଜାଗାରେ ପହଞ୍ଚିଗଲେ । ଯିଏ ଯେଝା ସୁବିଧା ଅନୁସାରେ ଲୁଚିଛପି ଜଗିରହିଲେ । ମାଙ୍କଡ଼ମାନେ ଗଛ ଉପରେ ଡିଆଁ ଡେଇଁ କରି ଚାରିଆଡ଼ ଦେଖିନେଲେ ଯେ ବହୁତ ମଣିଷ କାମ କରୁଛନ୍ତି । ଦଳେ ଯନ୍ତ୍ର ଲଗାଇ ଗଛ କାଟୁଛନ୍ତି । ଆଉ ଦଳେ ମଣିଷ କଟାହୋଇଥିବା ବଡ଼ ବଡ଼ କାଠଗଣ୍ଡି ଗୁଡ଼କୁ ବୋହିନେଇ ଟ୍ରକ ଗାଡ଼ିରେ ସଜାଡ଼ି ରଖୁଛନ୍ତି । କେତେଜଣ ଏମିତି ବୁଲିବୁଲି କାମ ଦେଖୁଛନ୍ତି । ଆଉ କେତେଜଣ ବନ୍ଧୁକ ଧରି ଜଗି ରହିଚନ୍ତି ।

ଏମାନଙ୍କୁ କଣ କପର ହଇରାଣ କରାଯିବ, ପଶୁପକ୍ଷୀମାନେ ବିଚାର କରୁଚନ୍ତି—ଏତିକିବେଳେ କୁଆଟିଏ ଉଡ଼ି ଉଡ଼ି ଆସି କହିଲା ଯେ—ସେଠାରୁ ପାଞ୍ଚ ଛଅ କିଲୋମିଟର ଦୂରରେ ମଣିଷମାନେ କେତେଗୁଡ଼ିଏ ତମ୍ବୁ ଘର କରିଛନ୍ତି । କାମସାରି ସେଠାକୁ ଯାଇ ଖିଆପିଆ କରି ବିଶ୍ରାମ ନିଅନ୍ତି । ସେଠି ରନ୍ଧାରନ୍ଧି ଚାଲିଛି ।

ରନ୍ଧାରନ୍ଧି କଥା ଶୁଣି କୁକୁର, ବଘାଡ଼, ନେଉଳ, ମାଙ୍କଡ଼ ପ୍ରଭୃତି ବଲୁଆ-ନନାକୁ ପଛରେ ମଣିଷମାନଙ୍କ ତମ୍ବୁଘର ଆଡ଼କୁ ଚାଲିଲେ । ବାଘ ଛୁଆମାନେ

ବନ୍ଧୁକ ଧରିଗଲେ । ଜଣେ ଦୁଇଜଣ ନାକ ଓ ଲାଞ୍ଜକୁ ଫୁଲାଇ ଗର୍ଜନ କରିବାପାଇଁ ଘୁମୁରିଉଠୁଥିଲେ । କିନ୍ତୁ ବଲ୍ଆ ସେମାନଙ୍କୁ ଗର୍ଜନ କରିବାକୁ ମନାକରିଦେଲା । ଏବେ ଗୁଣ୍ଡାଏ ପଶୁପକ୍ଷୀ ଆସିଛନ୍ତି ଜଣାପଡ଼ିଗଲେ ବଡ଼ ଅସୁବିଧା ହୋଇଯିବ । ଚୁପ୍‌ଚାପ୍ କଳେକୌଶଳେ ଯାହା କିଛି କରିବାକୁ ହେବ ।



ସୁ ଭିତରେ କେତୋଟି ନେଉଳ, ମାଙ୍କଡ଼, ଭୂଆ ବିରାଡ଼ି ଓ କୁକୁର ଦୌ
ଘରଅଡ଼ାକୁ ଗଲେ । ଦୂରରେ ରହି ଦେଖିଲେ ମଣିଷ କେତେଜଣ ତାଙ୍କ କାମ-

ଧନ୍ଦାରେ ବ୍ୟସ୍ତ ଅଛନ୍ତି । ଆଜି କେତେଜଣ ତମ୍ବୁ ପାଖେ ଏମିତି ସେମିତି ହେଉଛନ୍ତି । ଭିତରେ କ'ଣ ରନ୍ଧାବନ୍ଧା ଚାଲିଛି ଯେ ବାସନା ମହକୁଛି । ସେ ବାସନାରେ କୁକୁର ପାଟିରୁ ଲାଳ ବାହାରିଲା । ଏତିକିବେଳେ ମଉକା ଦେଖି କୁକୁର ଓ ବଣଭୁଆ ଆଗ ତମ୍ବୁ ଘରକୁ ପଶିଯାଇ ମନ ଖୁସିରେ ରନ୍ଧାହୋଇଥିବା ଖାଦ୍ୟରୁ କିଛି ଖାଇଗଲେ । ନେଉଳ ଓ ମାଙ୍କଡ଼ ମଧ୍ୟ ଲୁଚିଛପି ତମ୍ବୁ ଭିତରେ ପଶିଗଲେ । ମାଙ୍କଡ଼ ସେ ଘରେ ରଖାହୋଇଥିବା ପନିପରିବା, ଘିଅ, ତେଲର ଟିଣଡବା, ବୋତଲ ଗୁଡ଼ାକ ଫୋପଡ଼ା ଫୋପଡ଼ି କରି ଯେତେ ପାରିଲା ଜିନିଷ ନଷ୍ଟକରି ପଳାଇଗଲା ।

ଘରଭିତରେ ଖଡ଼ଖାଡ଼, ଧଡ଼ଧାଡ଼ ଶୁଣି ମଣିଷମାନେ ପାଟିକରି ଧାଇଁ-ଆସିଲେ । ଏସବୁ କାଣ୍ଡ ଦେଖି ସେମାନଙ୍କର ମନ ଖରାପ ହୋଇଗଲା । ସେତେ-ବେଳକୁ ମାଙ୍କଡ଼, କୁକୁର, ବରଡ଼ କଏ କୁଆଡ଼େ ଛୁ'ମାରିଲେଣି । ନେଉଳ ତ ଆଗରୁଗ ବୁଦା ବଣ ଭିତରେ ଦୌଡ଼ିଯାଇ ବାଲୁଆନନାକୁ ଏସବୁ ଖବର ଦେଇ-ସାରିଥାଏ ।

ତମ୍ବୁ ଜଗିଥିବା ମଣିଷମାନେ ବ୍ୟସ୍ତ ହୋଇପଡ଼ିଲେଣି । କୁଆଡ଼ୁ ଆସିଲେ ଏ ଜନ୍ତୁଗୁଡ଼ାକ—ଯାହା ତ ନଷ୍ଟକଲେ, ଘର ଭିତରେ ଝାଡ଼ା ପରିସ୍ରା କରି ଘରଟାକୁ ବଡ଼ ଅପରିଷ୍କାର କରିଦେଇଛନ୍ତି । ସେମାନେ ମୁଣ୍ଡରେ ହାତଦେଇ ବସିଲେ ।

ଏଣେ ପଶୁପକ୍ଷୀମାନଙ୍କର ବିଚାର ପଡ଼ିଛି ଏ ବନ୍ଧୁକବାଲା ଗୁଡ଼ାକ ଏଠି ରହିଥିବାଯାଏ କିଛି କରି ହେବ ନାହିଁ । ତମ୍ବୁଘର ଭିତରେ ଯାହା କାଣ୍ଡ ହେଇଛି । ସେ ଖବର ଯଦି ଆସି ଏଠି ପହଞ୍ଚିଯାଏ, ଏମାନେ ବେଶି ରାଗିଯିବେ । ତାହେଲେ କଣ କରାଯିବ ? ବାଘ କେତୋଟି ଶିଖାଶିଖି ହେଉଥିଲେ ଯେ ମଣିଷମାନଙ୍କୁ ଗୋଡ଼ାଇବେ; ତାହେଲେ ସେମାନେ ଡରିଯାଇ ସେ ଜାଗା ଛାଡ଼ି ପଳାଇବେ । ହାତୀମାନେ ଆସି କହିଲେ—ଏମାନେ ଯଦି ବନ୍ଧୁକଗୁଡ଼ାକ ତଳେ ରଖିଦିଅନ୍ତି, ତାହେଲେ ଆମେ ଯାଇ ନେଇଆସି ଜଙ୍ଗଲ ଭିତରେ ଲୁଚାଇଦିଅନ୍ତୁ ।

ଏତିକିବେଳେ ଦେଖାଗଲା କାଠ କାଟୁଥିବା ଲୋକମାନେ ଜିପ୍ ଗାଡ଼ି ଚଢ଼ି ଖାଇବା ପାଇଁ ତମ୍ବୁଘରକୁ ଚାଲିଲେ । ବନ୍ଧୁକବାଲାମାନେ ମଧ୍ୟ ଗୋଟାଏ ଜାଗାରେ ବସି କଣ ସବୁ ଖାଇଲେ । ସେତିକିବେଳେ ବନ୍ଧୁକଗୁଡ଼ାକ ନିଜ ନିଜ ପାଖରେ

ଥୋଇଦେଇ ଥାଆନ୍ତି । ଏତିକିବେଳେ ଠେକୁଆମାନଙ୍କ ମୁଣ୍ଡରେ ଗୋଟାଏ ବୁଦ୍ଧି ପଶିଲା । ସେମାନେ ଯାଇ ମଣିଷମାନେ ଖାଇବସିଥିବା ଜାଗାର ଠିକେ ଆଗରେ ଖୁସିରେ ଦୌଡ଼ାଦୌଡ଼ି କରି ଖେଳଲେ, ନାଚଲେ, କୁଦିଲେ । ଏଡ଼େ ସୁନ୍ଦରିଆ ଧଳା ଭୁଳା ମେଞ୍ଚାଭଳି ଦିଶୁଥିବା ଠେକୁଆ ଗୁଡ଼ିକୁ ଦେଖି ସେ ମଣିଷମାନେ ଲୋଭେଇଗଲେ । ଏହି ସୁନ୍ଦର ଠେକୁଆମାନଙ୍କୁ କୋଳରେ ଧରି ଖେଳିବାକୁ ଭାରି ମନ ହେଲା । ସେମାନେ ତରବରରେ ଖାଇବା କାମଟା ସାରିଦେଇ ଠେକୁଆମାନଙ୍କୁ ଧରିବା ପାଇଁ ତାଙ୍କ ପିଛରେ ଲାଗିଲେ । ବନ୍ଧୁକଗୁଡ଼ାକ ସେଇଠି ଥୁଆହୋଇଥାଏ ।

ଅନ୍ୟ ପଶୁମାନେ ଠେକୁଆମାନଙ୍କ ବୁଦ୍ଧିକୁ ମନେ ମନେ ପ୍ରଶଂସା କରି ସୁଯୋଗର ଅପେକ୍ଷାରେ ଲୁଚିଛପି ଥାଆନ୍ତି । ଗଛ ଉପରୁ ହନୁମାଙ୍କଡ଼ ସବୁ ଦେଖୁଥାଏ । ସେ ଯାଇ ହାତୀମାନଙ୍କୁ କହିଦେଲା—ମଣିଷମାନେ ଠେକୁଆଙ୍କ ପଛରେ ଆଉ ଥୋଡ଼ାଏ ବାଟ ଆଗେଇ ଯାଆନ୍ତୁ, ତୁମେମାନେ ଏ ବନ୍ଧୁକ ଗୁଡ଼ାକ ନେଇଆସି ଲୁଚେଇ ଦେବ । ପ୍ରଥମେ ଏକ ହାତୀ ବନ୍ଧୁକଟିଏ ଉଠାଇ ନେଇ କିଛି ଦୂରରେ ଥିବା ଦ୍ୱିତୀୟ ହାତୀକୁ ଦେବ । ସେ ବନ୍ଧୁକଟି ନେଇ କିଛି ବାଟ ପରେ ତୃତୀୟ ହାତୀକୁ ଦେବ । ସେ ମଧ୍ୟ କିଛି ବାଟ ନେଇ ବନ୍ଧୁକଟିକୁ ଚତୁର୍ଥ ହାତୀକୁ ଦେବ । ଚତୁର୍ଥ ହାତୀଟି ତାକୁ ନେଇ କଣ୍ଟାଳିଆ ଜଙ୍ଗଲରେ ଲୁଚେଇଦେବ । ଏମିତି ସବୁ ବନ୍ଧୁକ ଗୁଡ଼ାକ ଲୁଚି ଦେବାପରେ ଆଉ ଡର କଣ ?

ଠେକୁଆମାନେ ତ ଭାରି ଚଞ୍ଚଳ । ସେମାନେ ଆସ୍ତେ ଆସ୍ତେ ଲୁଚିଲୁଚିକା ଆଗକୁ ଆଗକୁ ଦୌଡ଼ୁଥାଆନ୍ତି ତ ପୁଣି କେତେବେଳେ କାହାକୁ ଠିକେ ଧରା ଦେଉଥାଆନ୍ତି । ମଣିଷମାନେ ଠେକୁଆମାନଙ୍କୁ କୋଳରେ କାଖରେ ଧରି ମନ ଖୁସିରେ ଆଉଁସୁଥାଆନ୍ତି । ଏହି ଖୁସିରେ ସେମାନେ ଯେ କାଠକଟା ଜାଗାକୁ ଯାଇଥିଲେ ସେକଥା ଭୁଲିଗଲେଣି । ଠେକୁଆମାନେ ସେମାନଙ୍କୁ ଭୁଲେଇଦେଇ ଖଣ୍ଡେ ଦୂର ନେଇଗଲେ ।

ସିଆଡ଼େ ହାତୀମାନେ ଯେମିତି କଥାହୋଇଥିଲେ, ବନ୍ଧୁକଗୁଡ଼ିକ ନେଇ କଣ୍ଟା ଜଙ୍ଗଲ ଭିତରେ ଲୁଚେଇଦେଲେ । କାଠକଟା ଯନ୍ତ୍ରପାତି ଗୁଡ଼ିକୁ ମଧ୍ୟ ନେଇ କୁଆଡ଼େ କୁଆଡେ ପକାଇଦେଲେ । ଏଥର ସେମାନେ ଟ୍ରକରେ ଲଦା ହୋଇ-ଥିବା କାଠଗଣ୍ଡିଗୁଡ଼ିକୁ ଜଙ୍ଗଲ ଭିତରକୁ ବୋହୁଥାଆନ୍ତି । ଟ୍ରକ୍ ଅଧାଅଧି ଖାଲି

ହୋଇଯିବା ପରେ ସେମାନେ ଟ୍ରକ୍‌କୁ ଓଲଟାଇଦେଇ ଗଡ଼ାଗଡ଼ି କରି ଭାଙ୍ଗି ଦେଲେ । ଆଠ ଦଶଟା ହାତୀ ଲାଗିଯାଇ ଥାଆନ୍ତି । ଟ୍ରକ୍‌ର ଇଞ୍ଜିନ୍ ଭାଙ୍ଗି, ଚକ ଫଟାଇ ଅନ୍ୟାନ୍ୟ ଅଂଶ ସବୁ ବଙ୍କାକରୁଥାଆନ୍ତି ।

କାମ କରି କରି ହାଲିଆ ହୋଇପଡ଼ିଲେଣି ହାତୀଦଳ । ନେଉଳ ଯାଇ ଗୋଟିଏ ଠେକୁଆକୁ ବୁଢ଼ା ମୂଳକୁ ଡାକି ଚୁପ୍‌ଚୁପ୍ ତା' କାନରେ କଣ କହି-ଦେଲା । ଠେକୁଆମାନେ ମଧ୍ୟ ମଝିରେ ମଝିରେ ପଛକୁ ବୁଲି ହାତୀମାନଙ୍କ କାଣ୍ଡ-କାରଖାନା ଦେଖୁଥାଆନ୍ତି । ଠିକ୍ ଏତିକିବେଳେ ବାଘମାନଙ୍କ ଗର୍ଜନ ଶୁଭିଲା । ଗୁଡିପିଡିହୋଇ ଠେକୁଆମାନେ ମାରିଲେ ଡିଆଁ । ମଣିଷମାନେ ବାଘ ଗର୍ଜନ ଶୁଣି ଆଗକୁ ଯିବେ ନା ପଛକୁ ଯିବେ ଠିକ୍ କରି ପାରୁନଥାନ୍ତି । ହାତରେ ତ ବନ୍ଧୁକ ନାହିଁ—ତେଣୁ ଟମ୍ବୁ ଆଡ଼କୁ ଦୌଡ଼ିପଳାଇଲେ । ଟମ୍ବୁ ପଡିଥିବା ଜାଗା ସେଠାରୁ ବହୁତ ଦୂର । ପଡ଼ିଉଠି ମଣିଷମାନେ ଦୌଡ଼ୁଥାଆନ୍ତି । ସେମାନଙ୍କ ଅବସ୍ଥା ଦେଖି ଗଛଉପରୁ ହନୁମାଙ୍କଡ଼ମାନେ ତାଳିମାରି ହସୁଥାଆନ୍ତି । ସେମାନଙ୍କୁ ଭାରି ମଜା ଲାଗୁଥାଏ ।

ଉପରବେଳା କାଠ କାଟିବାକୁ କେହି ଆଉ ଆସିଲେ ନାହିଁ । ପଶୁପକ୍ଷୀ-ମାନେ ଦୂରରେ ଲୁଚିଛପି ରହି କିଏ କେଉଁଠି ବିଶ୍ରାମ ନେଇଥାନ୍ତି । ଠିକ୍ ସନ୍ଧ୍ୟା ଆଗରୁ କେତେ ଜଣ ମଣିଷ ଜିପ୍‌ଗାଡ଼ି ଚଢ଼ି ଆସି ସେଠାରେ ପହଞ୍ଚିଲେ । କେତେ ଜଣଙ୍କ ହାତରେ ବନ୍ଧୁକ ଥାଏ । ଆଉ କେତେ ଜଣ ଟର୍ଚ୍ଚ-ଲାଇଟ ଧରିଥାଆନ୍ତି । କାଠ କଟା ହେଉଥିବା ଜାଗାରେ ସେମାନେ ବୁଲିବୁଲି କରି କ'ଣ ସବୁ ଖୋଜାଖୋଜି କଲେ । ଭଙ୍ଗାହୋଇଥିବା ଟ୍ରକ୍‌କୁ ଦେଖିଲେ । ଚାରିଆଡ଼େ ହାତୀମାନଙ୍କର ପାଦ ଚିହ୍ନ ଦେଖି ଅବସ୍ଥାଟା ବୋଧହୁଏ ବୁଝି-ପାରିଲେ । ସମସ୍ତେ ମନଦୁଃଖରେ ଏପାଖ ସେପାଖ ହୋଇ ପୁଣି ଜିପ୍‌ଗାଡ଼ି ଚଢ଼ି ଯୁଆଡ଼ୁ ଆସିଥିଲେ ସେଆଡ଼କୁ ଗାଡ଼ି ଚଳାଇ ପଳାଇଲେ ।

ସକାଳୁ ଉଠି ପଶୁପକ୍ଷୀମାନେ କିଏ କେଉଁଠି ବିଶ୍ରାମ ନେଇଥିଲେ । ସମସ୍ତେ ଆସି ଏକାଠି ହେଲେ । ଏହି ସବୁ ଖବର କୁଆ ଶୁଆ, ପାରିମାନଙ୍କ ହାତରେ ସିଂହରଜା ଓ ଅନ୍ୟ ପଶୁପକ୍ଷୀମାନଙ୍କ ପାଖକୁ ପଠାଇଦିଆଗଲା । ତା' ଛଡ଼ା ଅନ୍ୟମାନେ କିଛି ଦିନ ଏହି ଜଙ୍ଗଲର ସୀମାକୁ ଜଗିକରି ରହିବେ ଓ ପରେ ସୁବିଧା ଦେଖି ଜଙ୍ଗଲ ଭିତରକୁ ଫେରିବେ ବୋଲି ଖବର ଦେଲେ ।

କାରଣ ମଣିଷମାନେ ପୁଣି କେତେବେଳେ ଆସି ଜଂଗଲ ଧ୍ୱଂସ କରିପାରନ୍ତି, ସେମାନଙ୍କୁ ବିଶ୍ୱାସ ନାହିଁ । ସେମାନଙ୍କ ହାତରେ ତ ଗାଡ଼ି, ମଟର, ବନ୍ଧୁକ ସବୁ ସୁବିଧା ଅଛି ।

ଭାଲୁଆନନା ଅଳ୍ପ କେତେକ ପଶୁପକ୍ଷୀଙ୍କୁ ସେଠି ଜଗାଇ ଅନ୍ୟମାନଙ୍କୁ ଧରି ଜଙ୍ଗଲ ଭିତରକୁ ଫେରିଆସିଲା । ଏଥର ପାଳି କରି ଜଙ୍ଗଲର ସୀମା ଜଗିବାକୁ ପଶୁପକ୍ଷୀମାନଙ୍କୁ ପଠାଇବ ବୋଲି ସେ କହିଲା । ଅଜଗର ସାପଙ୍କ ଦଳରୁ ମଧ୍ୟ କେତେକଙ୍କୁ ଜଙ୍ଗଲର ସୀମାରେ ରହିବାକୁ କୁହାଗଲା । କୁଆ, ପାରି ପ୍ରଭୃତି ପକ୍ଷୀମାନେ ସୀମା ଅଞ୍ଚଳର ଖବର ନେଇ ଭାଲୁଆନନାକୁ ମଝିରେ ମଝିରେ କହିବେ । ଏମାନେ ଫେରିଯିବା ପରେ ସିଂହରାଜା ଓ ବାଘମନ୍ତ୍ରୀ ଏହି ପଶୁପକ୍ଷୀ-ମାନଙ୍କୁ ଭୋଜିକରି ଖୁଆଇଲେ । ଏମାନଙ୍କ କରାମତି କଥା ଶୁଣି ସମସ୍ତେ ଭାରି ଖୁସି ହେଲେ ।

## ଜନ୍ତୁମାନେ ଜଙ୍ଗଲର ନିଆଁ ଲିଭାଇଲେ

ଆଉଥରକର କଥା, ସେ ବର୍ଷ ଭାରି ଟାଣ ଖରା ହୋଇଥାଏ । ଜଙ୍ଗଲ ଭିତରେ ଥିବା ନଈ, ନାଳ, ଝରଣା, ପୋଖରୀ ସବୁ ଶୁଖିଯାଇଥାଏ । କୋଉଠି କେମିତି ଅଳ୍ପ ମୁନ୍ଦେ ପାଣି ଥାଏ । ପଶୁପକ୍ଷୀମାନେ ପାଣି ପାଇଁ ଭାରି ଛଟପଟ ହେଉଥାଆନ୍ତି । କିନ୍ତୁ କେତେକ ପଶୁ ଦିନେ ଦିନେ ଶୁଖିଯାଉଥିବା ପୋଖରୀକୁ ଖୋଳିବାରେ ଲାଗିଯାଆନ୍ତି । କେତେଜଣ ଖୋଳି ଖୋଳି ଯେବେ ହାଲିଆ ହୋଇ-ପଡ଼ନ୍ତି, ତାପରେ ଆଉ କେତେଜଣ ଆସି ଖୋଳିବାରେ ଲାଗିଯାଆନ୍ତି । ଏମିତି କରି ପୋଖରୀରେ ପାଣି ବଢ଼ିଗଲା । ପଶୁପକ୍ଷୀମାନଙ୍କର ପାଣି ପିଇବା ଦୁଃଖ ଟିକେ କମିଲା ।

କିନ୍ତୁ ସେହି ବର୍ଷ ହଠାତ୍ ଦିନେ ଜଙ୍ଗଲରେ ନିଆଁ ଲାଗିଲା । ଗଛତଳୁ ନିଆଁ ଧରିଛି । ଗଛ ଉପରେ କେତେ ଚଢ଼େଇ ବସାକରି ରହିଛନ୍ତି । ଚଢ଼େଇ ବସାରେ

ତାଙ୍କର ଛୋଟ ଛୋଟ ଛୁଆମାନେ ବଳକରେ ଚେଁ ଚୁଁ ରଡ଼ି ଛାଡ଼ି କାନ୍ଦୁଥିଲେ । ଅନେକ ଛୁଆଙ୍କର ମା'ମାନେ ସେତେବେଳେ ଚରିବୁଲି ଆହାର ଆଣିବା ପାଇଁ ଦୂର ଜାଗାମାନଙ୍କୁ ଉଡ଼ି ଯାଇଥାଆନ୍ତି । ମାଙ୍କଡ଼ମାନେ ବଡ଼ ସାହସରେ ସହିତ ଏ ଗଛ ସେ ଗଛ ଡେଇଁ ଚଢ଼ଇ ଛୁଆମାନଙ୍କୁ ଉଦ୍ଧାର କଲେ । ଏକ ନିରାପଦ ଜାଗାରେ ହରିଣମାନେ ଶୁଖିଲା ଘାସ, ପତ୍ର, କୁଟା କାଠି ଆଦି ଜମା କରିଥିଲେ— ସେଇଠି ନେଇ ସେ ଛୁଆମାନଙ୍କୁ ରଖାଗଲା । କାଳେ କିଛି ବିପଦ ଆସିବ, ତେଣୁ ମା'ଚଢ଼େଇମାନେ ଫେରିବା ଯାଏଁ ହରିଣ, ସମ୍ବର ଓ ଆଉ କେତେକ ପଶୁ ସେମାନଙ୍କୁ ଜଗିରହିଲେ ।

ଏଣେ ନିଆଁ ତ ମାଡ଼ି ମାଡ଼ି ଯାଉଛି । ନିଆଁ ଲାଗିଥିବା ଅଞ୍ଚଳର ଜନ୍ତୁମାନେ ଯିଏ ଯୁଆଡ଼େ ଦୌଡ଼ାଦୌଡ଼ି କରି ପଳାଉଛନ୍ତି । ଚାରିଆଡ଼ୁ ଖାଲି ହୋ'ହାଲ୍ଲା ପାଟି, ଜୀବଜନ୍ତୁମାନଙ୍କର କୋଳାହଳ ଶୁଭୁଛି । ଭାଲୁଆନନ୍ଦ, ସିଂହରାଜା, ବାଘମନ୍ତ୍ରୀ ବ୍ୟସ୍ତହୋଇ ଏଣେତେଣେ ଦୌଡ଼ୁଥାଆନ୍ତି । ଏ ନିଆଁକୁ କିପରି ଲିଭା-ହେବ ତାହାକୁ କିଛି ବୁଦ୍ଧିବାଟ ଦିଶୁନଥାଏ । ହାତୀମାନଙ୍କୁ ଭାରି ଗରମ, ତେଣୁ ସେମାନେ ଝରଣା ପାଖାପାଖି ଜଙ୍ଗଲ ଓ ନଈକୂଳିଆ ଜଙ୍ଗଲ ଆଡ଼େ ରହୁ-ଥାଆନ୍ତି । ଜଙ୍ଗଲରେ ନିଆଁ ଲାଗିବା ଖବର କେତେଜଣ ହାତୀଙ୍କ କାନରେ ପଡ଼ିଲା । ଗୁହୁଁ ଗୁହୁଁ ସବୁ ହାତୀ ଏ ଖବର ପାଇଗଲେ । ଜଙ୍ଗଲର ଜନ୍ତୁମାନଙ୍କ ଭିତରେ କଥା ପଡ଼ିଲା—ନିଆଁଟା ଯେତେ ଜୋର୍‌ରେ ଜଳୁଛି ତାକୁ ତ ଲିଭାଇବା ବଡ଼ କଷ୍ଟ ! କିନ୍ତୁ ହାତୀମାନେ ଚେଷ୍ଟା କଲେ ହୁଏତ ନିଆଁ ଲିଭାଇ ପାରିବେ । ହାତୀମାନେ ଆଉ ଡେରି ନ କରି ଝରଣାରୁ ଓ ନଈରୁ ସେମାନଙ୍କ ଶୁଣ୍ଢରେ ପାଣି ଭର୍ତ୍ତିକରି ବୋହିବାରେ ଲାଗିଗଲେ । ଯିଏ ଆଗ ପହଞ୍ଚିଲା, ନିଆଁଠାରୁ ଦୂରେଇ ରହି ନିଆଁ ଉପରକୁ ପାଣି ଛାଡ଼ିଲା ।

କିଛି ସମୟ ପରେ ନିଆଁ ଆସ୍ତେ ଆସ୍ତେ ଲିଭିବାକୁ ଆରମ୍ଭ କଲା । ନିଆଁ ଲାଗିବା ଜାଗାରୁ ଝରଣା ବେଶ୍ ଦୂର । କିନ୍ତୁ ହାତୀମାନେ ସେମାନଙ୍କ ମନର ବଳ ଓ ସାହସ ନେଇ ସେଇ ଦୂର ଝରଣାରୁ ଯିଏ ଯେତେ ଥର ପାରେ ଶୁଣ୍ଢରେ ପାଣି ବୋହୁଥାଆନ୍ତି । ଯଦି କେଉଁ ହାତୀ ହାଲିଆ ହୋଇପଡ଼େ, ତେବେ ସେ ବାଟରେ କେଉଁଠି ଟିକେ ରହିଯାଇ ବିଶ୍ରାମ ନିଏ । ହରିଣ ଓ ମାଙ୍କଡ଼ମାନେ ନାନା ଗଛର ଡାଳପତ୍ର ଭାଙ୍ଗି ଆଣି ହାତୀ ମୁହଁରେ ଗଦେଇ ଦିଅନ୍ତି । ଖାଦ୍ୟ

ଖାଇଦେଲେ ଦେହର ବଳ ସାଙ୍ଗକୁ ମନର ବଳ ବଢ଼ିଯାଏ । ତେଣୁ ହାଲିଆ ହୋଇପଡ଼ିଥିବା ହାତୀ ପୁଣି ପାଣି ବୋହିବାରେ ଲାଗିଯାନ୍ତି ।

ଜଂଗଲ ଭିତରେ ଆଉ ବେଶୀ ପଶୁପକ୍ଷୀ ନଥାନ୍ତି । ଗରମ ଓ ନିଆଁ ଧାସ ଉପରେ ସମସ୍ତେ ଜଂଗଲର ସୀମା ଆଡ଼କୁ ପଳାଇଥାଆନ୍ତି । ଦୂରରେ ଥାଇ ଭଗବାନଙ୍କୁ ଡାକୁଥାଆନ୍ତି କେମିତି ସେମାନଙ୍କ ଜଂଗଲର ନିଆଁ ଶୀଘ୍ର ଲିଭିଯିବ, କେତେକ ଜନ୍ତୁ ବର୍ଷାହେବାପାଇଁ ଇନ୍ଦ୍ରଦେବତାଙ୍କୁ ଡାକ ମୁଣ୍ଡିଆ ମାରୁଥାଆନ୍ତି । ହାତୀମାନେ ନିଆଁ ଲିଭାଇବାକୁ କେମିତି ବହୁତ ପରିଶ୍ରମ କରୁଛନ୍ତି, ସେ ଖବର ସମସ୍ତେ ପାଇସାରିଥାଆନ୍ତି । ହାତୀଭାଇମାନଙ୍କ ପାଇଁ ଜଂଗଲର ସୀମାରୁ ନାନା-ଜାତି ଗଛର ଡାଳପତ୍ର ସବୁ ଗଧ ଓ ଘୋଡ଼ାଙ୍କ ପିଠିରେ ଲଦି ଅନ୍ୟ ପଶୁପକ୍ଷୀ-ମାନେ ପଠାଉଥାଆନ୍ତି । ଅନେକ ଗୁଡ଼ିଏ ପଶୁପକ୍ଷୀ ନିଆଁର ଧାସରେ ବହୁତ କଷ୍ଟ ପାଉଥାଆନ୍ତି । ସେମାନଙ୍କ ସେବାରେ ମଧ୍ୟ କେତେକ ପଶୁପକ୍ଷୀ ଲାଗି-ଥାଆନ୍ତି । ବଣିଆ ଗଛର ପତ୍ରର ରସ ସେମାନଙ୍କ ଦେହରେ ଲଗାଉଥାଆନ୍ତି । ଏମିତି ନିଜ ନିଜ ଭିତରେ ସାହାଯ୍ୟ ସହଯୋଗ ଚାଲିଥାଏ । ଯୋଉମାନଙ୍କର ଦେହ ଖରାପ, ସେମାନେ ତ ଶୋଇରହିଥାଆନ୍ତି । ଅନ୍ୟ କେତେକ ତାଙ୍କ ପାଇଁ ଖାଇବା ଜିନିଷ ମଧ୍ୟ ଆଣି ମୁହଁ ପାଖରେ ଦେଇଯାଉଥାଆନ୍ତି । ଭାଲୁଆଜନା ବୁଲି ବୁଲି ସମସ୍ତଙ୍କ ଖବର ବୁଝୁଥାଏ ।

ଏହା ଭିତରେ ତିନି-ଚାରି ଦିନ କଟି ଗଲାଣି । ହାତୀମାନେ ପାଣି ନେଇ ଝରଣା ଓ ନଈକୁ ପୂରା ଶୁଖାଇ ଦେଉଥାଆନ୍ତି । ତାପରେ କିଛି ସମୟ ଅପେକ୍ଷା କରନ୍ତି । ଝରଣାରେ ଟିକେ ବେଶି ପାଣି ଝରିଲେ ତାହାକୁ ଶୁଣ୍ଢରେ ନେଇ ନିଆଁ ଉପରେ ପକାନ୍ତି । ନିଆଁ ପୂରା ନଲିଭିଲେ ବି ଅଧାଅଧି ଲିଭିଯାଇଥାଏ । ନିଆଁ ଜଳିବାରୁ ଜଂଗଲ ଭିତରେ ଅତି ଗରମ ପବନ ବହି ଯେଉଁ କଷ୍ଟ ହେଉଥିଲା, ନିଆଁ ଲିଭିଆସିବାରୁ ସେ ଗରମ କମିଆସିଲାଣି । ଇନ୍ଦ୍ରଦେବତା ବୋଧେ ଏ ନିରୀହ ପଶୁପକ୍ଷୀମାନଙ୍କର ଡାକ ଶୁଣିଲେ—ହଠାତ୍ ତିନି-ଚାରି ଦିନ ଧରି ଜଂଗଲ ଭିତରେ ଦୁଇ-ଚାରି ଅସରା ଘୋର ବର୍ଷା ହେଲା । ବର୍ଷାଦେଖି ଜଙ୍ଗଲର ପଶୁପକ୍ଷୀ-ମାନେ ଆନନ୍ଦରେ ନାଚିଲେ । ନିଆଁ ଆଉ ଯାହା ଟିକେ ଟିକେ ଜଳୁଥିଲା, ସେ ସବୁ ଲିଭିଗଲା ଓ ଅସହ୍ୟ ଗରମ ହାଉରୁ ମଧ୍ୟ ସମସ୍ତେ ରକ୍ଷାପାଇଗଲେ । ହାତୀମାନେ ନିଆଁ ଲିଭାଇବାକୁ ପରିଶ୍ରମ କରି ବେଶ୍ ଦୁର୍ବଳ ହୋଇପଡ଼ିଥିଲେ,

ସେମାନେ ଏବେ ବିଶ୍ରାମ ପାଇଲେ ।

ସିଂହରାଜା ଓ ବାଘମନ୍ତ୍ରୀ ହାତୀମାନଙ୍କୁ ଡାକି ବହୁତ ପ୍ରଶଂସା କଲେ । ସେମାନେ ଜଙ୍ଗଲ ରାଜ୍ୟପାଇଁ ଯେଉଁ ମହତକାମ କରିଛନ୍ତି, ପଶୁପକ୍ଷୀମାନେ ସେମାନଙ୍କ ଜୀବନରେ ଏକଥା କେବେ ବି ଭୁଲିପାରିବେ ନାହିଁ । ସେହିଦିନଠାରୁ ହାତୀମାନଙ୍କର ଖାତିର ଜଂଗଲ ଭିତରେ ଆହୁରି ଟିକେ ବଢ଼ିଗଲା । ଆସ୍ତେ ଆସ୍ତେ ପଶୁପକ୍ଷୀମାନେ ଜଂଗଲକୁ ଫେରି ଆସିଲେ । ଶୁଖିଯାଇଥିବା ନଈ, ନାଳ, ପୋଖରୀରେ ପାଣି କିଛି ରହିଗଲା । ପୂର୍ବ ଦୁଃଖ ଭୁଲି ପୁଣି ସମସ୍ତେ ଆନନ୍ଦରେ ବୁଲିବୁଲି କରି ମନଖୁସିରେ ରହିଲେ । ବର୍ଷା ଋତୁ ଆସିଗଲାଣି । ଗ୍ରୀଷ୍ମଋତୁର ଗରମ ପରେ ଏବେ ଚାରିଆଡ଼ ବେଶ୍ ଥଣ୍ଡା ଲାଗୁଛି । ସମସ୍ତଙ୍କର ମନ ବେଶ୍ ଖୁସି ଅଛି ।

## ଜନ୍ତୁମାନଙ୍କ ଭିତରେ ମନ ଫାଟିଲା

ଏହା ଭିତରେ କେତୋଟି ଦିନ ବିତିଗଲାଣି । ଜଙ୍ଗଲ ରାଜ୍ୟରେ ବର୍ଷାଋତୁ ପରେ ପରେ ଶୀତଋତୁ ଆସି ଚାଲିଗଲାଣି । ଶୀତ ପରେ ଆସିଛି ବସନ୍ତ ଋତୁ । ଚାରିଆଡେ ଗଛଲତାରେ ନୂଆପତ୍ର କଅଁଳିଛି । ସୁନ୍ଦର ଫଳ ଫୁଲରେ ଗଛ-ମାନ ଭରିଯାଇଛି । ଫୁଲ ବାସନାରେ ଜଂଗଲସାରା ମହକୁଚି । ଆମ୍ବଗଛ ବଉଳରେ ଭରିଉଠିଛି । କୋଇଲି ରାଣୀ ମନଖୁସିରେ ଆମ୍ବଗଛର ଡାଳରେ ବସି ଗୀତ ଗାଉଛି । ପଶୁପକ୍ଷୀମାନେ ବେଶ୍ ହସ ଖୁସିରେ ଅଛନ୍ତି ।

ଆଜି ପଶୁରାଜ ସିଂହର ପୁଅ ବିଭାଘର । ସିଂହର ଗୁହା ଓ ପାଖଆଖ ଫୁଲ-ପତ୍ରରେ ସଜାହୋଇଛି । ଆନନ୍ଦ କୋଳାହଳ ଲାଗିଛି । ଭୋଜିଘରେ ରନ୍ଧାରନ୍ଧି ସହିତ ଖିଆପିଆ ବି ଚାଲିଛି । କେତେ ପଶୁପକ୍ଷୀ ଉପହାରମାନ ଧରି ଆସୁଛନ୍ତି । ମାଙ୍କଡ଼ମାନେ ଧାଡ଼ିହୋଇ ବସି ବାଜା ବଜାଉଛନ୍ତି । ଗଛଡ଼ାଳରେ କୋଇଲି, କୁମ୍ଭାଟୁଆ, ଶାରି, ଶୁଆ କଜଳପାତି ଆଦି ଚଢ଼େଇମାନେ ବସି ଗୀତ ଗାଉଛନ୍ତି ।

ମୟୂରମାନେ ନାଚ କରୁଛନ୍ତି । ସିପାହୀ ଭାଲୁଆମାନଙ୍କୁ ଟିକଏ ବି ବେଳ ନାହିଁ । ସେମାନେ ବୁଲି ବୁଲି ସମସ୍ତଙ୍କ ଖିଆପିଆ ଠିକ୍ ହେଉଚି କି ନା ଦେଖୁଛନ୍ତି ।

ସିଂହରାଜା ଦେଖୁଛନ୍ତି—ଏତେ ଅତିଥିଙ୍କ ଭିତରେ ବାଘମନ୍ତ୍ରୀଙ୍କ ଦଳର କାହିଁ କିଏ ତ ଆସି ନାହାନ୍ତି ? କେଡେ ଆନନ୍ଦ ଉତ୍ସବ ଲାଗିଛି । ସିଂହରାଜାଙ୍କର ଆଖି ଆଉଥରେ ସବୁଆଡ଼େ ବୁଲିଆସିଲା । ସବୁ କାମ ଠିକ୍‌ଠାକ୍ ଚାଲିଛି ।

ଏମିତି ଆନନ୍ଦ ଉତ୍ସବ ଭିତରେ ଲାଗିଲା ସତେକି ଜଂଗଲ ଭିତରୁ କେଉଁ-ଆଡ଼ୁ ହଠାତ୍ ଝଡ଼ ତୋଫାନ ମାଡ଼ିଆସିଲା । କ'ଣ ହେଲା କେଜାଣି—ଏ କୋଳାହଳ ଭିତରେ ଖାଲି ଲାଗିଲା ଯେ ବାଘମାନେ ଗର୍ଜନ କରି ମାଡ଼ିଆସୁଛନ୍ତି । ତାପରେ ଶୁଣାଗଲା ପଶୁପକ୍ଷୀମାନଙ୍କର ପାଟିତୁଣ୍ଡ, ଚିତ୍କାର ଓ ଦୌଡ଼ାଦୌଡ଼ି କିଏ କାହାକୁ ଗୋଡ଼ାଇ ଗୋଡ଼ାଇ କାମୁଡ଼ୁଛି । ନିଜ ନିଜ ଭିତରେ ଧରାଧରି ମରାମରି, ଗଡ଼ାଗଡ଼ି ଚାଲିଥାଏ । କିଏ କିଏ ଚିତ୍କାର କରି ଦୌଡ଼ି ଦୌଡ଼ି ଜଂଗଲ ଭିତରକୁ ପଳାଉଥାନ୍ତି । ଭାଲୁଆ ସିପାହୀମାନେ କାହାକୁ ଧରିବେ, କାହାକୁ ରକ୍ଷା କରିବେ କିଛି ବୁଝିପାରୁ ନଥାନ୍ତି । ସବୁ ପ୍ରକାର ପାଟିତୁଣ୍ଡ, ଗର୍ଜନ ତର୍ଜନ ଭିତରେ ବନଭୂମି ଯେମିତି କମ୍ପୁଥାଏ । ଏତେ ଆନନ୍ଦ ଉତ୍ସବ, କୋଳାହଳ, ନାଚ, ଗୀତ, ଖୁସି ସବୁ କୁଆଡ଼େ ଗଲା ?

ଏତିକିବେଳେ ଦେଖାଗଲା ସିଂହରାଜା ଓ ମନ୍ତ୍ରୀ ମହାବଳବାଘ ଭିତରେ ଭୀଷଣ ଧସ୍ତାଧସ୍ତି ଲଢ଼େଇ ଚାଲିଛି । ତା ଭିତରେ ଦୁହେଁ ଦୁହିଁଙ୍କୁ ଗାଳିଦେଇ ଗଡ଼ାଗଡ଼ି ହେଉଛନ୍ତି । ପଶୁପକ୍ଷୀମାନେ ଅଡ଼େଇହୋଇ କିଏ କୁଆଡ଼େ ଗଲେଣି । ଖାଲି ଭାଲୁଆଦଳ ଦୂରେଇ କରି ଥାଆନ୍ତି । ଅନେକ ପଶୁପକ୍ଷୀ ଖଣ୍ଡିଆଖାବରା ହୋଇଥାନ୍ତି । କାହାର ଗୋଡ଼ହାତ ଭାଙ୍ଗିଛି, କାହାର ମୁଣ୍ଡ ଫାଟିଛି । ସିଂହରାଜା ଓ ବାଘମନ୍ତ୍ରୀ ଯୁଦ୍ଧ କରି କରି ହାଲିଆ ହୋଇପଡ଼ିଲେଣି; ତଥାପି ରାଗରେ ଗର୍ଜନ କରୁଥାଆନ୍ତି । କିନ୍ତୁ ଏପରି ଘଟଣା କାହିଁକି ଘଟିଲା ତାର କାରଣ କେହି ହେଲେ କିଛି ବୁଝିପାରୁନଥାନ୍ତି । ଭାଲୁଆମାନେ ଅପେକ୍ଷାରେ ଥାଆନ୍ତି—ସିଂହ-ରାଜା ଓ ବାଘମନ୍ତ୍ରୀଙ୍କର କ୍ରୋଧ କମିଲେ ଯାହା କିଛି ପଚରାପଚରି କରିବେ ।

ରାତି ପାହିଲା ବେଳକୁ ଜଙ୍ଗଲ ରାଜ୍ୟଟା ଯେମିତି ଛାରଖାର ହୋଇଗଲା ଭଳି ଲାଗୁଥାଏ । ବାଘମନ୍ତ୍ରୀଙ୍କ ଦଳର କେହି ଜଣେ ବି ନଥାନ୍ତି—କୁଆଡ଼େ ପଳାଇ ଯାଇ-

ଥାଆନ୍ତି । ଅନ୍ୟ ସକାଳ ଭଳି ସେଦିନ ଆଉ କୋଇଲିମାନଙ୍କର କୁହୁ କୁହୁ ସ୍ୱର ଶୁଣିବାକୁ ମିଳୁନଥାଏ । ଚଢ଼େଇମାନେ ମଧ୍ୟ କିଏ କେଉଁଠି ବସିଥାଆନ୍ତି —କାହାର ମନରେ ସୁଖ ନଥାଏ । ସିଂହ ରାଜାପୁଅଙ୍କର ହାତଗୋଡ଼ ଜଖମ ହୋଇଥାଏ । ଫଳେ ସିଂହରାଜା ମଧ୍ୟ ଓଃ ଆଃ ଚିତ୍କାର କରି ଏକଡ଼ ସେକଡ଼ ହେଉଥାଆନ୍ତି । ତେଣୁ ତାଙ୍କ ମନ ଠିକ୍ ନଥାଏ ।

ବଲୁଆନନା ମନରେ ସାହସ ବାନ୍ଧି ରାଜାଙ୍କ ସାମନାକୁ ଗଲା । ଗତକାଲିର ଅସୁନ୍ଦର ଲଢ଼େଇରେ ରାଜାଙ୍କର ଆଗଗୋଡ଼ ଓ ପଛଗୋଡ଼ ଜଖମ ହୋଇଛି । ଦେହର କେତେକ ଜାଗା ମଧ୍ୟ ଖଣ୍ଡିଆଖାବରା ହୋଇଛି । ଏହା ଦେଖି ବଲୁଆ-ନନାର ମନ ବହୁତ ଖରାପ ହେଲା । ସେ ଭାବିଲା—ଆମର ଏଠି ଏତେ ପଶୁପକ୍ଷୀ ଥାଉ ଥାଉ ରାଜାଙ୍କର ଏଭଳି ଅବସ୍ଥା ହୋଇଗଲା ! ସିଂହରାଜା ବଲୁଆନନାକୁ ଦେଖି ରାଗରେ ଗର୍ଜନ କରିଉଠିଲେ । ତା ପାଖରେ ଅନ୍ୟ ସିଂହମାନେ ଶୋଇରହି ଖଣ୍ଡିଆଖାବରା ହୋଇଥିବାରୁ ଘୁମୁରି ଘୁମୁରି ଗର୍ଜନ କରୁଥାଆନ୍ତି । କିଏ କିଏ ରାଜାଙ୍କୁ ସହାନୁଭୂତି ଦେଖାଇ ଟିକେ ଆଉଁସି ଦେଉଥାଆନ୍ତି, ଦେହକୁ ଚାଟିଦେଉଥାଆନ୍ତି ।

ବଲୁଆନନା ରାଜାଙ୍କ ପାଖରେ ବସି ବୁଝାଇଲା—ହଜୁର, ଆପଣ ଜମା ବ୍ୟସ୍ତ ହୁଅନ୍ତୁ ନାହିଁ, ମୁଁ ଆଜି ଜଙ୍ଗଲସାରା ବୁଲି କ'ଣ ପାଇଁ ଗତକାଲି ଭଳି ଘଟଣାରେ ଏଭଳି ମାଡ଼ଗୋଳି ଲାଗିଲେ ବୁଝିଆସିବି । ବାଘମନ୍ତ୍ରୀଙ୍କର କାହିଁକି ଏତେ ରାଗ ହୋଇଛି ଜାଣିସିବା ପରେ ଆମେ ଯାହା କିଛି ପ୍ରତିକାର କରିବା ।

ବଲୁଆନନା ସେଠାରୁ ଯାଇ ଜଙ୍ଗଲରେ ବୁଲିଲା । ଦେଖିଲା, ଗତକାଲି ସିଂହ-ରାଜାଙ୍କର ପୁଅ ବାହାଘରରେ ଯେଉଁ ପଶୁପକ୍ଷୀମାନେ ଯୋଗଦେଇଥିଲେ, ସେମାନଙ୍କ ଭିତରୁ ଅନେକ ଖଣ୍ଡିଆଖାବରା ହୋଇଛନ୍ତି । କାହାର ମନ ଭଲ ନାହିଁ । ସମସ୍ତଙ୍କ ମନରେ ସେହି ଗୋଟିଏ ପ୍ରଶ୍ନ—ହଠାତ୍ ଏଭଳି ଗଣ୍ଡଗୋଳଟା ଏ ଗତକାଲି କାହିଁକି ହେଲା ? ବାହାଘର ଉତ୍ସବରେ କେତେ ଆନନ୍ଦରେ ସମସ୍ତେ ମାତିଥିଲେ । କିଏ କହୁଛି—ତାକୁ ମାଙ୍କଡ଼ମାନେ ଶିଙ୍କାର ହୋଇ ମାରିଗୋଡ଼େଇଲେ ତ କିଏ କହୁଛି ଚଢ଼େଇମାନେ ଥଣ୍ଟରେ ଖୁମ୍ପି ପକେଇଲେ । ତା'ଛଡ଼ା ଆଉ କିଏ କିଏ କହୁଛନ୍ତି ବାଘମାନେ ଆମକୁ ଗୋଡ଼ାଇ ଗୋଡ଼ାଇ

କାମୁଡ଼ଦେଲେ । ଏମିତ କେହି କଛି ଠିକ୍ କରି କହିପାରୁନାହାନ୍ତି । ଅନେକ ଭାଲୁ, ଆ ସିପାହି ଓ ଜଗୁଆଳ କୁକୁର ମଧ୍ୟ ଗତକାଲ ଗଣ୍ଡଗୋଳରେ ଖଣ୍ଡିଆଖାବରା ହୋଇଛନ୍ତି । କାହାର ଗୋଡ଼ ଛୋଟା ହୋଇଯାଇଛି ତ କାହାର ହାତ ଜଖମ-ହୋଇଯାଇଛି । ଏଥିରୁ ଦେଖିପାରି ଭାଲୁଆନନା ଭାବିଲା ବାଘମାନେ ନଶ୍ଚେ କୌଣସି କାରଣରୁ ସିଂହରାଜା ଉପରେ ରାଗିଛନ୍ତି, ଯେଉଁଥିପାଇଁ ଏଭଳି ଘଟଣା ଘଟିଗଲା । ଯାହା ତ ହେବାର ହୋଇଗଲାଣି, ଏବେ ପ୍ରକୃତ କାରଣ ନଜାଣିବାଯାଏ ଉପାୟ ଠିକ୍ କରିହେବ ନାହିଁ । କାଳେ ଜଙ୍ଗଲ୍ ବାହାରୁ କେହି ଶତ୍ରୁ ପଶୁପକ୍ଷୀ ଆସିଥିବେ—ନଭୁଲ ଖବର ଜଣାପଡ଼ିବାଯାଏ ସେ ସବୁ ସିପାହି ଭାଲୁଆ ଓ ଜଗୁଆଳ କୁକୁରମାନଙ୍କୁ ଅଧିକ ସତର୍କ ରହିବାକୁ ବୁଝାଇଦେଲା ।

## ଜଙ୍ଗଲ ରାଇଜ ଦ୍ୱ'ଭାଗ ହେଲା

ଜଙ୍ଗଲରେ ଗଣ୍ଡଗୋଳ ହେବାର ଗ୍ରୁରିଦିନ ହୋଇଗଲାଣି । ଭାଲୁଆନନା' ଏ ବିଷୟରେ ବହୁତ ଚିନ୍ତା କରୁଥାଏ—କନ୍ତୁ କଛି ସ୍ଥିର କରି ପାରୁନଥାଏ । ଆଘାତ ପାଇଥିବା ପଶୁପକ୍ଷୀମାନଙ୍କର ଜଖମ ଗୋଡ଼ହାତ ଓ ଖଣ୍ଡିଆଖାବରା ଟିକେ ଭଲହୋଇ ଆସିଲାଣି । ଭାଲୁଆନନା ବସି ବସି ଭାବୁଥିଲା ଆଜ ଟିକଏ ରାଜାଙ୍କ ନଅର ଗୁମ୍ଫା ଆଡ଼ୁ ଯାଇ ବୁଲଆସିଲେ ଭଲ ହୁଅନ୍ତା । ଠିକ୍ ସେତକ-ବେଳେ ଦଳେ ମାଙ୍କଡ଼ କାନ୍ଦୁଣ୍ଡମାନ୍ଦୁଣ୍ଡ ହୋଇ ଆସି ପହଞ୍ଚିଗଲେ । ସେମାନେ କହିଲେ—ସେଦିନ ସେମାନଙ୍କର ମୋଟୁ ମାଙ୍କଡ଼ ପୁଅର ଜନ୍ମଦିନ ଉତ୍ସବ ବେଶ୍ ଧୂମଧାମ୍‌ରେ ପାଳିତ ହେଉଥିଲା । ତା ପୁଅର କେତେ ଜଣ ସାଙ୍ଗ ଆସିଥିଲେ । କଏ କେତେ ପ୍ରକାରର ଫଳମୂଳ ସବୁ ଆଣିଥିଲେ । ଆମ୍ବ, କଦଳୀ, ପିଜୁଳି, ଜାମୁକୋଳ, କୋଳି, କାକୁଡ଼ି ସବୁ ଗଦାକରି ଖିଆପିଆ ଗ୍ଲୁଲିଥିଲା । କେତେକ ବରଗଛ ଓହଳରେ ଦୋଳି ଖେଳୁଥିଲେ । ଏମିତ ହସଖୁସି ମଉଜ ମଜଲିସ ଗ୍ଲୁଲ-ଥିବାବେଳେ କୁଆଡ଼ୁ ଆଉ ଦଳେ ହନୁମାଙ୍କଡ଼ ଆସି ସେଠି ପହଞ୍ଚିଗଲେ । ସେମାନଙ୍କୁ ମାରଧର କରି ଖାଇବା ଜନିଷସବୁ ଫୋପଡ଼ା ଫିଙ୍ଗା କରିଦେଲେ ।

ସଜାସଜ ଭାଙ୍ଗିଦେଲେ । ବରଗଛର ଡୋଳସବୁକୁ ଛିଣ୍ଡାଇଦେଲେ । ଏମିତ୍ତ ଗୁଡ଼ାଏ ଗଣ୍ଡଗୋଳ କରିସାରି ଏଗଛ ସେଗଛ ଡେଇଁ ଡେଇଁ ନଈ ସେପାରି ଜଙ୍ଗଲକୁ ପଳାଇଲେ ।

ଏକଥା ଶୁଣି ଭାଲୁଆନନା ରାଗିଯାଇ କହିଲା, "ସେମାନେ ଏତେ କ୍ଷୟକ୍ଷତି କରିଦେଲେ, ଆଉ ତୁମେମାନେ କ'ଣ ତାଙ୍କର କିଛି କରିପାରିଲ ନାହିଁ ?" ଏହା ଶୁଣି ବଡ଼ ହନୁମାଙ୍କଡ଼ ଡିଆଁଟେ ମାରି ଆସି କହିଲା, "ନା ନା, ଆମ ପିଲାମାନେ କ'ଣ ଛାଡ଼ିଛନ୍ତି କି ? ଏମାନେ ମଧ୍ୟ ସେମାନଙ୍କୁ ଭଲରକମ ମାଡ଼ଧର କରି ଦୂରକରିଛନ୍ତି । ସେଥିରେ ଆମର ଅନେକ ପିଲାଙ୍କର ଗୋଡ଼ ହାତ ଜଖମ ହୋଇଛି, ଖଣ୍ଡିଆଖାବରା ହୋଇଛୁ । ସେମାନଙ୍କ ଘରେ ତ କାନ୍ଦବୋବାଳି ପଡ଼ିଛି । ଆପଣଙ୍କୁ ଏ ଖବରଟା କହିଦେବାକୁ ଆମେମାନେ ଆସିଛୁ । ଆପଣ ରାଜାଙ୍କୁ କହି ଘଟଣା କଣ ଶୀଘ୍ର ବୁଝନ୍ତୁ, ନୋହିଲେ ଜଙ୍ଗଲ ଭିତରେ ଆଉ ଚଳି ହେବ-ନାହିଁ ।"

ଏସବୁ କଥା ଶୁଣି ଭାଲୁଆନନାର ମୁଣ୍ଡ ଖରାପ ହୋଇଗଲା । ସେ ବ୍ୟସ୍ତ ହୋଇପଡ଼ିଲା । ସେ ଭାବିଲା—ଜଗଲ ଭିତରେ ଆମର ପଶୁପକ୍ଷୀମାନଙ୍କ ଭିତରେ କେତେ ଏକତା ! ସବୁ କାମରେ ଏକମନ ଏକମେଳ ହୋଇ ଚଳନ୍ତି । ଆଉ ଏବେ ଏ ସବୁ କ'ଣ ଘଟୁଛି ? କେବେ ତ ଏପରି କିଛି ହୁଏନାହିଁ । ସେ ହନୁ-ମାଙ୍କଡ଼ମାନଙ୍କୁ ବୁଝାଇ ସୁଝାଇ କହିଲା—ମୁଁ ଯାଉଛି ରାଜାଙ୍କୁ ଏସବୁ କହି ଯାହା-କିଛି ବ୍ୟବସ୍ଥା କରିବ । ତୁମେମାନେ ବ୍ୟସ୍ତ ହୁଅନା । ମୋ ଠାରୁ ଖବର ପାଇଲେ ତୁମେମାନେ ଆସିବ—ଏବେ ଘରକୁ ଯାଅ ।"

ସିଂହରାଜା ପାଖକୁ ଯାଉଥିବାବେଳେ ଭାଲୁଆନନାକୁ ବାଟରେ ଭେଟି ଦଳେ ଚଢ଼େଇ କହିଲେ, "ଆଜି ଦଳେ ଚଢ଼େଇ ନଈ ସେପାରି ଜଙ୍ଗଲକୁ କୋଳି ଖାଇବାକୁ ଯାଇଥିଲେ । କିନ୍ତୁ ସେଠି ଆଉ କେତେଗୁଡ଼ାଏ ଚଢ଼େଇ ଆସି ଏମାନଙ୍କ ସାଙ୍ଗେ କଳି ଝଗଡ଼ା କରି କାହାରିକୁ କୋଳି ଖାଇ ଦେଲେ ନାହିଁ । ଦୁଇ ଦଳଙ୍କ ଭିତରେ ଖୁବ୍ ଲଢ଼େଇ ହେଲା । ଗୁଡ଼ାଏ ଚଢ଼େଇ ଏଥିରେ ଖଣ୍ଡିଆଖାବରା ହୋଇ ଫେରିଛନ୍ତି—ଆଉ କେତେ ଜଣ ତ ଏଯାଏ ଫେରି-ନାହାନ୍ତି । କୁଆଡ଼େ ଗଲେ ତା ବି ଜାଣିହେଉନାହିଁ ।"

ଏହି ଘଟଣା ଶୁଣିବା ପରେ ବେଲୁଆନନା ଆଉ ଟିକେ ବି ଡେରି ନକରି ଏସବୁ ଖବର ଯାଇ ସିଂହରାଜାଙ୍କୁ କହିଲା । ସିଂହରାଜା ଏ ଖବର ଶୁଣି ଖୁବ୍ ରାଗିଗଲେ । ଆଖିକୁ ଲାଲକରି, ଲାଂଗୁଡ଼ ଫୁଲାଇ ଗର୍ଜନ କରି ନିଜ ସେପାରି ଜଂଗଲ ଆଡ଼କୁ କଟମଟ କରି ଚାହିଁରହିଲା ।

ବେଲୁଆନନା କହିଲା, "ଦେଖନ୍ତୁ ମହାରାଜ, ଆମ ଜଙ୍ଗଲକୁ ବିପଦ ଆସିଛି । ଆପଣ ରାଗ କରି ଲାଭ ନାହିଁ । ବରଂ ଧୀର ସ୍ଥିର ମନରେ ବିଚାର କରନ୍ତୁ ଏବେ କ'ଣ କରିବା ।"

ସିଂହରାଜା ନିଜର ଭୁଲ ବୁଝିପାରି ଶାନ୍ତ ହୋଇଗଲା । ତାପରେ କହିଲା— "ଏସବୁ କଣ ଘଟୁଛି ମୁଁ ତ କିଛି ବୁଝିପାରୁନାହିଁ···ତୁମେ କଣ ଅନୁମାନ କରୁଛ ? କ'ଣ ପାଇଁ ଆମ ପଶୁପକ୍ଷୀମାନଙ୍କ ଭିତରେ ଏତେ ଅଶାନ୍ତ ହେଉଛି ? ଜଂଗଲ ସାରା ବୁଲି ତୁମେ କଣ ଖବର ପାଇଲ ?"

ବେଲୁଆନନା କହିଲା, "ଏଯାଏଁ ଠିକ୍ କିଛି ଜାଣି ହେଉନାହିଁ । ତେବେ ମୁଁ ଅନୁମାନ କରୁଛି ଯେ, ବାଘମନ୍ତ୍ରୀ କୌଣସି କାରଣରୁ ଆପଣଙ୍କ ଉପରେ ରାଗିଛନ୍ତି । ସେଥିପାଇଁ କେତେକ ପଶୁପକ୍ଷୀଙ୍କୁ ଆପଣଙ୍କ ବିରୁଦ୍ଧରେ ମତାଉଛନ୍ତି ।"

"ଏଁ ବାଘମନ୍ତ୍ରୀ ମୋ ଉପରେ ରାଗିଛି ? ମୁଁ ଏ ମହାବଳବାଘଗୁଡ଼ାଙ୍କୁ ଟିକଏ ହେଲେ ଡରେ ନାହିଁ କି ଖାତିରି ବି କରେ ନାହିଁ । ସେମାନେ ଜଂଗଲ ଭିତରେ ନିଜକୁ ବହୁତ ବଳୁଆ ବୋଲି କହି ଗର୍ବ କରନ୍ତି ।"—ଏମିତି'କହୁ କହୁ ସିଂହରାଜା ପୁଣି ଭୀଷଣ ରାଗି ନିଶକୁ ଫୁଲାଇଦେଲା । ତାର କେଶରଭରା ମୁହଁଟା ଆହୁରି ଭୟଙ୍କର ଦିଶିଲା । ସେ କହିଲା, "ସେଦିନ ମୁଁ ମୋ ପୁଅ ବିଭାଘର କାମରେ ବ୍ୟସ୍ତ ଥିଲି, ନହେଲେ ଦୁଇଚାରିଟା ବାଘକୁ ଚେକି କାମୁଡ଼ି ମାରିଦେଇଥାନ୍ତି ।"

ରାଜାଙ୍କୁ ଶାନ୍ତ କରିବା ପାଇଁ ଏଥର ବେଲୁଆନନା କହିଲା, "ଦେଖନ୍ତୁ ମହାରାଜ, ମୁଁ ଆଉ ଗୋଟିଏ କଥା ମଧ୍ୟ ଭାବୁଛି । ବାହାରର କେହି ପଶୁପକ୍ଷୀ ଶତ୍ରୁତା କରିବାପାଇଁ ଆମର କେତେକ ପଶୁପକ୍ଷୀଙ୍କୁ ଶିଖାଇ ଏପରି କିଛି ଚକ୍ରାନ୍ତ କରୁଥିବେ । ଯାହା ବି ହେଉ, ସତ ଘଟଣାଟା ଅଳ୍ପ ଦିନ ଭିତରେ ନିଶ୍ଚୟ ଜଣାପଡ଼ିଯିବ ।"

ସିଂହରାଜା ଟିକେ ଶାନ୍ତ ହୋଇ ଯାଇ କହିଲା—"ଅଚ୍ଛା ଠିକ୍ ଅଛି, ତୁମେ ପଶୁପକ୍ଷୀମାନଙ୍କୁ ଶୀଘ୍ର ଖବର ଦେଇ ଦିଅ, ତାଙ୍କର ଦଳପତିମାନେ କାଲି ଏଠି ସବୁ ଏକାଠି ହୁଅନ୍ତୁ । ଆମେ ସଭା କରି ସମସ୍ତଙ୍କର ମତାମତ ନେଇ ଯାହା କରିବା ।"

ଭାଲୁଆଣନନା ସେଠାରୁ ଆସି ସିଂହରାଜା ଦରବାରର ସଭା ଖବର ସବୁ ପଶୁପକ୍ଷୀଙ୍କ ପାଖକୁ ପଠାଇଲା ଓ ନିଜେ ନଈ ସେପାରି ଜଂଗଲର ବାଘମନ୍ତ୍ରୀଙ୍କ ଗୁହା ଆଡ଼େ ଯାଇ ମନ୍ତ୍ରୀଙ୍କୁ ସଭା ହେବା ଖବର ଦେଲା । ତାଙ୍କୁ ଦେଖି ବାଘମନ୍ତ୍ରୀ ରାଗିଯାଇ ଗର୍ଜନ ଛାଡ଼ିଲା । ତାଙ୍କର ବୋଲକରା ବାଘ କେତେଜଣ ଭାଲୁଆଣନନା ପାଖକୁ ଆସି କହିଲେ, "ମହାବଳ ବାଘଙ୍କ ଦେହ ଭଲ ନାହିଁ । ରାଜାଙ୍କୁ କହିଦେବ କାଲି ସେ ପଶୁ ସଭାରେ ଯୋଗ ଦେଇ ପାରିବେ ନାହିଁ ।"ସେମାନେ ଖାଲି ରାଗରେ ସଁ ସଁ ହେଉଥାଆନ୍ତି ।

## ଜଂଗଲ ମୁଲକର ରାଜପଣ ପାଇଁ କଳହ

ତା ପରଦିନ ସିଂହରାଜାଙ୍କ ଗୁହା ପାଖରେ ପଶୁପକ୍ଷୀମାନଙ୍କର ସଭା ବସି-ଥାଏ । କେତେ ପ୍ରକାର ଆଲୋଚନା ଚାଲିଥାଏ । ଅବଶ୍ୟ ଏହି ସଭାକୁ ଖୁବ୍ କମ୍ ପଶୁପକ୍ଷୀ ଆସିଥାଆନ୍ତି । ଜଂଗଲରେ ଏସବୁ ଗଣ୍ଡଗୋଳ କଣ ପାଇଁ ହେଉଛି ସଭାର ଆଲୋଚନାରୁ ଠିକ୍‌ରୂପେ ଜାଣି ହେଲା ନାହିଁ । ପଶୁପକ୍ଷୀମାନେ ଭିନ୍ନ ଭିନ୍ନ ପ୍ରକାର ମତ ଦେଉଥାଆନ୍ତି । ବାଘ ଦଳର କଏ ବି ଆସିନଥାନ୍ତି ।

ଗୋଟିଏ ବୁଢ଼ା ଭାଲୁ ଠିଆହୋଇ କହିଲା, "ବୁଝିଲେ ମହାରାଜ, ମୁଁ ଭାବୁଛି ଏଇ ଯେଉଁ ପଶୁପକ୍ଷୀମାନେ ଆସି ଝଗଡ଼ା କରୁଛନ୍ତି, ଆମର ପଶୁପକ୍ଷୀମାନେ ଯଦି ତାଙ୍କ ଭିତରୁ କେତେ ଜଣଙ୍କୁ ଘେରାଉ କରି ଧରିପାରନ୍ତେ, ତାହେଲେ ହୁଏତ ସେମାନଙ୍କୁ ପଚରାପଚରି କଲେ କଥାଟା କିଛି ଜଣାପଡ଼ନ୍ତା ।"

ଚଢ଼େଇମାନଙ୍କ ଭିତରୁ ଚିଲଟିଏ ବାହାରି କହିଲା, "ଦେଖନ୍ତୁ, ସେମାନେ ତ

ଝଡ଼ ପରି ଅଗ୍ନନକ ଏତେ ଜଲଦ ଆସି ପହଞ୍ଚି ଯାଉଛନ୍ତି ଓ ମାରଧର କରି ପଳାଇ ଯାଉଛନ୍ତି । ଏତେ ଅଳ୍ପ ସମୟ ଭିତରେ ସେମାନଙ୍କୁ ଠିକ୍ କରି ଚିହ୍ନିବା ମୁସ୍କିଲ ହେଉଛି । ଆଉ ସେମାନଙ୍କୁ ଧରିବା କ'ଣ ଏତେ ସହଜ ?"

ଏତିକବେଳେ ହନୁମାଙ୍କଡ଼ଟା କେଉଁଠି ଥିଲା, ଗଛ ଉପରୁ ଡିଆଁମାରି ତଳକୁ ଆସି କହିଲା, "ମହାରାଜ, ଆମ ପିଲମାନେ ଗଣ୍ଡଗୋଳ କରୁଥିବା ସେ ମାଙ୍କଡ଼ କେତେଟାଙ୍କୁ ଧରିବାକୁ ଚେଷ୍ଟା କରିଥିଲେ; କିନ୍ତୁ ସେମାନେ ଖସିଗଲେ । ଆଉ ଥରେ ହାବୁଡ଼େ ପଡ଼ିଗଲେ ଆମ ପିଲମାନେ ତାଙ୍କୁ କେଭେହେଲେ ଛାଡ଼ିବେ ନାହିଁ । ସମସ୍ତେ ମନେ ମନେ ସତର୍କ ଅଛନ୍ତି ।"

ହାତୀଟାଏ ବାହାରି କହିଲା, "ଦେଖ, ତୁମମାନଙ୍କ ଭିତରୁ ସେ ଗଣ୍ଡଗୋଳ-କାରୀଙ୍କୁ ଯିଏ ଧରିବ, ସେମାନଙ୍କୁ ଆମ ଦଳର ଜମା ଦେଇଦେବ । ଆମେ ତାଙ୍କୁ ଶୁଣ୍ଢରେ ବୁଲାଇ, ତଳେ କଚଡ଼ି ବେଶ୍ ହଇରାଣ କରିଦେବୁ ।"

ଏଇଭଳି କଥାବାର୍ତ୍ତା ଚାଲିଥିବାବେଳେ ପାଖ ବରଗଛର ଉଚ୍ଚ ଡାଳରୁ ଗୋଟାଏ ବଡ଼ ଚଢ଼େଇ କହିବାର ଶୁଣାଗଲା, "ବାଘମନ୍ତ୍ରୀ କହୁଛନ୍ତି, ନଈ ସେପାରି ଜଙ୍ଗଲରାଜ୍ୟକୁ ବାଘରାଜାଙ୍କର ଜଙ୍ଗଲ ରାଜ୍ୟ ବୋଲି ଆଜି ଏହି ସଭାରେ ଘୋଷଣା କରାଯାଉ, ତାହେଲେ ଆଉ ଏତେ ଝଗଡ଼ା କି ଗଣ୍ଡଗୋଳ ହେବନାହିଁ ।" ଏତିକ କହି ଡେଣା ଫଡ଼ ଫଡ଼ କରି ବଡ଼ ଚଢ଼େଇଟା ନଈ ସେପାରିର ଜଙ୍ଗଲ ଆଡ଼େ ଉଡ଼ି ଉଡ଼ି ଚାଲିଗଲା । ସଭାର ସବୁ ପଶୁପକ୍ଷୀ ଆଁ କରି ଉପରକୁ ଚାହିଁ-ଥାଆନ୍ତି । ସେ କୋଉ ଚଢ଼େଇ ଏପରି କହିଗଲା କେହି ତାକୁ ଚିହ୍ନି ପାରିଲେ ନାହିଁ । କିଏ କହିଲା ବଡ଼ ଛଞ୍ଚାଣଟାଏ, ପୁଣି କିଏ କହିଲା—ନା ନା, ଶାଗୁଣା-ଟାଏ କି ଶଙ୍ଖଚିଲଟାଏ ।

କିନ୍ତୁ ଏତିକ ଶୁଣିବାପରେ ସିଂହରାଜା ଭୀଷଣ ରାଗିଗଲା । ସେ ତାର ପାଖ ସିଂହମାନଙ୍କୁ ଡାକି ଗର୍ଜନ କରି ସାଙ୍ଗେ ସାଙ୍ଗେ ବାହାରିପଡ଼ିଲା । ରାଜାଙ୍କର ଏ ରୂପ ଦେଖି ପଶୁପକ୍ଷୀମାନେ ଡରି ଥରିଗଲେ । ରାଜା କହୁଥାଆନ୍ତି, "ଆଜି ଆମେ ସେ ମହାବଳ ବାଘମନ୍ତ୍ରୀକୁ ଦେଖିନେବା । ସିଂହଦଳ ସାଙ୍ଗେ ଲଢ଼େଇ କଲେ ବାଘଦଳ ଜାଣିବେ ଯେ ଜଂଗଲ ଭିତରେ କିଏ ବେଶୀ ବଳୁଆ । ବଳ ଯାହାର ବେଶି ହେବ, ସେ ଏହି ଜଙ୍ଗଲର ରାଜା ହେବ ।" ଏମିତି କହୁ କହୁ ରାଜା

ଗୋଟେ କୁହାମାର ବାହାରିପଡ଼ିଲେ ।

ବଲୁଆନନା ଦୌଡ଼ିଆସି ସିଂହରାଜାଙ୍କୁ ଅଟକାଇଲା । ସେ କହିଲା, "ଆପଣ କିଛି ନ ଭାବି ନ ଚିନ୍ତି ଏମିତି ଲଢ଼େଇ କରିବାକୁ ବାହାରିଲେ ଉଭୟଦଳ ଖଣ୍ଡି ଆ-ଖାବର ହେବେ । କାହାର ଜୀବନ ଉପରେ ମଧ୍ୟ ଅସୁବିଧା ହୋଇପାରେ । ଆପଣମାନେ ଶାନ୍ତ ହୁଅନ୍ତୁ । ବାଘଦଳଙ୍କୁ ଠିକ୍ ଶିକ୍ଷା ଦେବାର ଦାୟିତ୍ୱ ମୋ ଉପରେ ଛାଡ଼ିଦିଅନ୍ତୁ । ମୁଁ କଥା ଦେଉଛି ଦୁଇ-ତିନିଦିନ ଭିତରେ କିଛି ନା କିଛି ଉପାୟ କରିବ ।"

ସିଂହରାଜା ତ ଖୁବ୍ ରାଗିଯାଇଥାଏ—ଏସବୁ ନ ଶୁଣି ସେ ଗୁମ୍ଫାରୁ ଏକ କୁହା-ମାର ନ ଣ ଆଉକି ଥୋଡ଼ାଏ ବାଟ ଚାଲିଯାଇଥାଏ । ଅନ୍ୟ ସିଂହମାନେ ମଧ୍ୟ ଦୌଡ଼ ଦୌଡ଼ ଗର୍ଜନ କରି ରାଜାଙ୍କ ପଛେ ପଛେ ଚାଲିଥାଆନ୍ତି । ସେତେବେଳକୁ ସେଠାରେ ଜମିଥିବା ପଶୁପକ୍ଷୀମାନେ କଏ କୁଆଡ଼େ ଚାଲିଗଲେଣି ।

ବଲୁଆନନା ଓ ତା ଦଳର ବଲୁଆ ସିପାହୀ କେତେଜଣ ପୁଣିଥରେ ଯାଇ ସିଂହମାନଙ୍କୁ ଅଟକାଇଲେ । କଣ ଭାବି ରାଜା ଠିକେ ରହିଗଲେ । ତାପରେ ନିଜର ରାଗ ଶାନ୍ତକରି ବଲୁଆଙ୍କୁ କହିଲେ, "ଠିକ୍ ଅଛି, ମୁଁ ତୁମକୁ ଦୁଇଦିନ ସମୟ ଦେଲି । ବାଘଦଳଙ୍କୁ କପରି କଣ ଦଣ୍ଡ ଦିଆଯିବ ଶୀଘ୍ର ଠିକ୍କରି ମୋତେ ଆସି ଖବର କହିବ । ନହେଲେ ଆମେମାନେ ଆଉ କାହାର କଥା ଶୁଣିବୁ ନାହିଁ—ଯାହା ମନକୁ ଆସିବ କରିଯିବୁ । ତା'ଛଡ଼ା ନ ଣ ସେପାରି ଜଙ୍ଗଲ ଆଡ଼େ ଯିବାକୁ ସବୁ ପଶୁପକ୍ଷୀଙ୍କୁ ମନାକର । ଆମ ଜଙ୍ଗଲ ଉପରେ ମଧ୍ୟ ଜଗୁଆଳ କୁକୁରମାନଙ୍କୁ ସତର୍କ ଦୃଷ୍ଟି ରଖିବାକୁ କହିଦିଅ । ସେପାରି ଜଙ୍ଗଲର କେହି ଯଦି ଆସନ୍ତି, ତାଙ୍କୁ ଧରିବାକୁ ଚେଷ୍ଟା କରିବେ ।"

ସବୁ କଥାରେ ହଁ ହଁ। ମାରି ବଲୁଆନନା ସେଠାରୁ ଫେରିଗଲା । ଯାହାହେଉ ସିଂହମାନେ ରାଗ ଶାନ୍ତକରି ସେମାନଙ୍କ ଗୁହାକୁ ଫେରିଲେ । ଜଙ୍ଗଲସାରା ବୁଲିବୁଲି କରି କେତେବେଳେ ଭାଲୁଦଳ ତ କେତେବେଳେ ହାତୀଦଳ ସାଙ୍ଗେ ବଲୁଆନନାର କଥାବାର୍ତ୍ତା ହେଲା । ସିଂହରାଜାଙ୍କୁ ସିନା କହିଦେଇ ଆସିଲା, ହେଲେ ଯେତେ ଯାହା ଉପାୟ ପାଞ୍ଚିଲେ ବି ବାଘମାନଙ୍କୁ କାବୁ କରିବା ଏତେ ସହଜ ନୁହେଁ । କିଛି ନ କରି ପାରିଲେ ସିଂହଦଳ ଓ ବାଘଦଳ ଭିତରେ ଭୀଷଣ ଲଢ଼େଇ ତ ନିଶ୍ଚେ

ଲାଗିଯିବ । ଆଜି ଏପରି ଭୀଷଣ ଲଢ଼େଇ ଲାଗିଲେ ଏ ସୁନ୍ଦର ଜଙ୍ଗଲଟା ଛାରଖାର ହୋଇଯିବ ।

ଏଇଭଳି ଚିନ୍ତାକରି ଯାଉ ଯାଉ ଠେକୁଆ, ନେଉଳ, ହରିଣ ପ୍ରଭୃତି ଜନ୍ତୁଙ୍କ ସାଙ୍ଗରେ ତାର ଦେଖାହେଲା । ସେମାନେ କହିଲେ, "ଭାଲୁଆଭାଇ, ଦେଖ, ତୁମେ ବଡ଼ ଭୁଲ କଲ । ସିଂହରାଜାଙ୍କ ଦଳ ତ ବାଘଦଳଙ୍କ ସାଙ୍ଗେ ଲଢ଼େଇ କରିବାକୁ ବାହାରିଥିଲେ—ତୁମେ ମନାକଲ କାହିଁକି ? ବାଘଦଳ କ'ଣ ଆମ ରାଜାଙ୍କୁ ଜିଣି ପାରି ଥାଆନ୍ତେ ? ସେମାନେ ନିଶ୍ଚୟ ହାରି ଥାଆନ୍ତେ । ସିଂହରାଜାଙ୍କ ଦଳ-ଛଡ଼ା ଆମ ଜଙ୍ଗଲ ଭିତରେ କିଏ ଆଉ ଏତେ ବଳୁଆ ଓ ସାହସୀ ଅଛନ୍ତି ଯେ, ବାଘମାନଙ୍କ ସାଙ୍ଗେ ଲଢ଼ିବେ ? ଏବେ ବାଘଦଳ କହୁଛନ୍ତି—'ନଈସେପାରି ଜଙ୍ଗଲ ରାଜ୍ୟଟା ଆମର । ବାଘ ସେଠି ରାଜା ହେବେ ।" କାଲି ପୁଣି ଭାଲୁମାନେ ହୁଏତ କହିବେ—ଏପାଖ ଜଙ୍ଗଲଟା ଆମକୁ ଦିଅ, ସେଠି ଭାଲୁ ରାଜା ହେବେ । ଏମିତି ପୁଣି ଆଉ କୋଉଦିନ ହାତୀ, ଘୋଡ଼ା କି ଅନ୍ୟ କେଉଁ ପଶୁମାନେ କହିବେ ଆମକୁ ଖଣ୍ଡେ ଖଣ୍ଡେ ଜଙ୍ଗଲ ଦିଅ—ଆମେ ସେଠି ରାଜା ହେବୁ । ତା'ହେଲେ ଆମର ଏ ବିରାଟ ଜଙ୍ଗଲଟା କଣ ଏମିତି ଅଲଗା ଅଲଗା ହୋଇଯିବ ? ଆମେ ଏତେଗୁଡ଼ା ପଶୁପକ୍ଷୀ ତାହେଲେ କ'ଣ କରିବୁ ? କେହି କୋଉ ଜଙ୍ଗଲକୁ ସ୍ୱାଧୀନଭାବେ ଯାଇପାରିବେ ନାହିଁ । ନିଜ ନିଜ ଭିତରେ କଳି ଝଗଡ଼ା ଲାଗିରହିବ । ଏହି ବଡ଼ ଜଙ୍ଗଲ ଭିତରେ ଆମେମାନେ କେତେ ସ୍ୱାଧୀନ ଭାବରେ ଚଳୁଛୁ । ଆମର ଅବସ୍ଥା ଫେର୍ କ'ଣ ହେବ ?"

ଭାଲୁଆନନା ସମସ୍ତଙ୍କୁ ବୁଝାଇ ଦେଲା—ମୁଁ ଏହବୁ ବିଷୟରେ ବହୁତ ଚିନ୍ତା କରୁଛି—ତୁମେମାନେ ବ୍ୟସ୍ତ ହୁଅନା । ମୋର ଇଚ୍ଛା ସିଂହଦଳ, ବାଘଦଳଙ୍କ ସାଙ୍ଗରେ ଲଢ଼େଇ ନକରନ୍ତୁ । ଏମାନେ ହେଲେ ଆମର ଜଙ୍ଗଲର ସବୁଠାରୁ ବଳୁଆ ଜନ୍ତୁ । ଲଢ଼େଇ ଲାଗିଲେ ଜୀବନ କ୍ଷୟକ୍ଷତି ତ ନଷ୍ଟ ହେବ—ତା'ଛଡ଼ା ଆମ ଜଙ୍ଗଲର ବଳ, ଶକ୍ତି ମଧ୍ୟ କମିଯିବ । ତେଣୁ ଜଙ୍ଗଲ ବାହାରୁ ଯଦି ଆମେ କେଉଁ ବଳୁଆ ଜନ୍ତୁକୁ ଆଣି ପାରନ୍ତେ, ତା'ହେଲେ ସେମାନେ ଏ ବାଘଦଳଙ୍କ ସାଙ୍ଗେ ଲଢ଼େଇ କରି ସେମାନଙ୍କୁ ଠିକଣା ଶାସ୍ତି ଦିଅନ୍ତେ । ସମୟେ ସମୟେ ମୁଁ ଭାବୁଛି, ଯଦି କୌଣସି ପ୍ରକାରେ ଆମେ ମଣିଷମାନଙ୍କୁ ଆମ ଜଙ୍ଗଲ ଭିତରକୁ ଆଣିପାରନ୍ତେ, ତାହେଲେ ସେମାନେ ଏ ବାଘଦଳଙ୍କୁ ଠିକ୍ ଶିକ୍ଷା ଦିଅନ୍ତେ ।

ଏସବୁ କଥା ଶୁଣି ପଶୁପକ୍ଷୀମାନେ ଆଁ କରି ବଲୁଆର ମୁହଁକୁ ଚାହିଁଲେ । ଠେକୁଆ, ମାଙ୍କଡ଼, କୁକୁର ପ୍ରଭୃତି ହୋହୋ ହୋଇ ହସିଉଠିଲେ । ଗୋଟିଏ ଠେକୁଆ କହିଲା, "ତୁମେ କ'ଣ କହୁଛ ମଣିଷମାନଙ୍କୁ ଆଣିବ ! ଆମ ମହାବଳ ବାଘ ଥରେ ଚାହିଁଲେ ଏକାବେଳକେ ପାଞ୍ଚଟା ମଣିଷଙ୍କୁ ପାଟିରେ ପକାଇଦେବେ ! ଆଜି ମଣିଷମାନେ ବାଘମାନଙ୍କ ସାଙ୍ଗେ କଣ ଲଢ଼େଇ କରିବେ ?"

ବଲୁଆନନା କହିଲା, "ଯା ଯା, ତୁ ଏତେଟିକେ ପିଲା, ତୋର କଣ ବୁଦ୍ଧି ଅଛି ଯେ ତୁ ହସୁଛୁ ? ମୁଁ ଭାବୁଛି କଣ ଉପାୟ କଲେ ମଣିଷ ଶିକାରୀମାନେ ଆମ ଜଙ୍ଗଲକୁ ଆସି ବାଘ ଶିକାର କରିବେ । ତୁମେମାନେ ଏବେ ଏ ସବୁ ବୁଝି-ପାରିବ ନାହିଁ । ତୁମେମାନେ ଯିଏ ଯେଝା ଘରକୁ ଯାଅ । ସମସ୍ତେ ସତର୍କ ହୋଇ ଚଳ । ନିଜ ନିଜ ଦଳର କାହାକୁ ନିଷ୍ଠ ସେପାରି ଜଙ୍ଗଲ ଆଡ଼କୁ ଯିବାକୁ ଦେବନାହିଁ ।"

ପଶୁପକ୍ଷୀମାନେ ମୁହଁ ବୁଲାଇ ଯିଏ ଯେଝା ଘରକୁ ଗଲେ । ସମସ୍ତଙ୍କର ବିଶ୍ୱାସ ଅଛି ବଲୁଆନନା ତ ଭାରି ଚାଲାକ ଓ ଚତୁର—ସେ ନିଶ୍ଚୟ କିଛି ନା କିଛି ଉପାୟ ବାହାରକରି ଜଙ୍ଗଲ ପାଇଁ ସୁବିଧା କରିବ ।

## କଳ ତୁଟିବ କିପରି ?

ନାନା ପ୍ରକାର ଚିନ୍ତାକରି ବଲୁଆନନା ଜଙ୍ଗଲସାରା ଖାଲି ପାଗଳଙ୍କ ପରି ବୁଲୁଥାଏ । ଏ ଦୁଇଦିନ ହେଲା ତାର ଖିଆପିଆ କି ଶୋଇବାର ଠିକ୍ ଠିକଣା ନଥାଏ । ଆଜି ଯଦି କିଛି ଉପାୟ ନମିଳେ, ସିଂହରଜାକୁ ସେ କ'ଣ କହିବ ?

ହଠାତ୍ ସେ ଦେଖିଲା, ଗୋଟିଏ ଗଛଡାଳରେ କୋଉ କାଳର ପୁରୁଣା ବାଘଛାଲଟିଏ ଟଙ୍ଗାହୋଇଛି । ଏ ବାଘଛାଲ ଖଣ୍ଡ ଏଠି କିଏ ରଖିଛି ? ସେ ଭାବିଲା

ବୋଧହୁଏ କେବେ କେଉଁ ଋଷି କି ମୁନି ଏଠାରେ ତପସ୍ୟା କରୁଥିଲେ; ଏ ଖଣ୍ଡିକ ଏମିତି ରଖିଛନ୍ତି । ସେ ଯାହା ବି ହେଉ, ସେଇଟିକୁ ଦେଖି ଭଲୁଆନନାର ମୁଣ୍ଡକୁ ଗୋଟାଏ ବୁଦ୍ଧି ଦଶିଗଲା । ସେ ତାର ସାଙ୍ଗ ଭଲୁଆମାନଙ୍କୁ ଆନନ୍ଦରେ ହୁକେ ହୋ, ହୁକେ ହୋ ଚିତ୍କାର କରି ଡାକପକାଇଲା । ତାର ଡାକ ଶୁଣି ପାଖଆଖରେ ଯିଏ ଯେଉଁଠି ଭଲୁଆ ସିପାହୀମାନେ ଥିଲେ ସାଙ୍ଗେ ସାଙ୍ଗେ ତା' ପାଖକୁ ଆସିଲେ । ଭଲୁଆନନାର କହିବା ଅନୁସାରେ ବାଘଛାଲଟି ସମସ୍ତଙ୍କ ସାହାଯ୍ୟରେ ଗଛଉପରୁ କଢ଼ାଗଲା । ସେଇଟିକୁ ଝାଡ଼ିଝୁଡ଼ି ପରିଷ୍କାର କରି ଗୋଟିଏ ଭଲୁଆ ଘୋଡ଼ିହୋଇପଡ଼ିଲା । ଆରେ ବାଃ, ମୁହଁ ନଦେଖି ଦେହଟାକୁ ଦେଖିଲେ ଠିକ୍ ଗୋଟାଏ ବାଘ ଭଳି ତ ଦିଶୁଛି !

ସମସ୍ତଙ୍କୁ ସେଇଠି ବସାଇ ଭଲୁଆନନା କହିଲା, "ମୋ ମୁଣ୍ଡରେ ଗୋଟାଏ ବୁଦ୍ଧି ପଶିଛି । ମୁଁ ଭାବୁଛି ଜଣେ ଏହି ଛାଲଟି ଘୋଡ଼ିହୋଇ ଜଙ୍ଗଲ ଆଖପାଖର ମଣିଷମାନଙ୍କ ଗାଁକୁ ଯିବ । ସେଇଠି ବେଳ କାଳର ସୁବିଧା ଦେଖି ମଣିଷଙ୍କର ଗ୍ଟେଟପିଲା ଗୋଟିକୁ ଟେକିଆଣିବ ଓ ଜଙ୍ଗଲ ଆଡ଼କୁ କିଛି ବାଟ ଆସିବା ପରେ ବାଟରେ ଛାଡ଼ିଦେବ । ତାହେଲେ ମଣିଷମାନେ ପିଲାକୁ ବାଘ ନେଇଗଲା ଭାବି ନିଶ୍ଚୟ କିଛି ବାଟ ଗୋଡ଼ାଇ ଆସିବେ—ତାପରେ ପିଲାଟିକୁ ପାଇ ନେଇଯିବେ । ଏମିତି ଆଉଦିନେ ପୁଣି ଆଉ ଗୋଟିଏ ପିଲାକୁ ସୁବିଧା ଦେଖି ଉଠାଇଆଣି, ସେଦିନ ଆଉ ଟିକେ ବେଶି ବାଟ ନେଇଆସିବ । ମଣିଷମାନେ ତ ବାଘ ଉପରେ ନିଶ୍ଚୟ ରାଗିବେ । ତାଛଡ଼ା ଠେଙ୍ଗା ବାଡ଼ି ଧରି ଗୋଡ଼ାଇ ଗୋଡ଼ାଇ ଆସି ଜଙ୍ଗଲର ବାଟ ମଧ୍ୟ ଦେଖିନେବେ । ଏଇ ଭଳି ସୁଯୋଗ ଦେଖି ତିନି ଚାରିଥର କରିବା ପରେ କ୍ରମେ କ୍ରମେ ବାଘ ଉପରେ ମଣିଷମାନଙ୍କ ରାଗ ବେଶି ବଢ଼ିଯିବ । ସେମାନେ ଚେଷ୍ଟା କରିବେ ସହରରୁ ବଡ଼ ବଡ଼ ଶିକାରୀମାନଙ୍କୁ ଡକାଇ ଆଣି କିପରି ବାଘ ଶିକାର କରିବେ । କିନ୍ତୁ ତୁମେମାନେ ଯିଏ ମଣିଷପିଲାଙ୍କୁ ଉଠାଇ ଆଣିବ, ଟିକେ ସାବଧାନରେ ଆଣିବ, ଯେପରି ପିଲାର କିଛି କ୍ଷତି ନହୁଏ । କାରଣ ମଣିଷମାନେ ତ ଆମର କିଛି କ୍ଷତି କରୁନାହାନ୍ତି, ବରଂ ଆମର ଉପକାର ପାଇଁ ଆମେ ମଣିଷ-ମାନଙ୍କର ସାହାଯ୍ୟ ନେଉଛୁ ।"

ଭଲୁଆମାନଙ୍କ ଭିତରୁ କେତେଜଣ ବଡ଼ ସାହସର ସହିତ କହିଲେ, "ଆମେ କଥାଟା ଠିକ୍ ଠିକ୍ ବୁଝିଗଲୁ । ତୁମେ ଆମ ଭିତରୁ ଯାହାକୁ ପଠାଇବ ସେ ଯାଇ କାମଟି ବେଶ୍ ତୁଲାଇ ପାରିବ । କଥାହେଲା ମଣିଷମାନେ ବାଘମାନଙ୍କ

ଉପରେ ରଗିବେ ଓ ଜଂଗଲ ଭିତରକୁ ଆସି ବାଘ ରହୁଥିବା ଜଂଗଲ ଦେଖିବେ । ଏତକ କାମ ଯେତେ କଷ୍ଟକର ହେଉ ପଛେ, ଆମେ ଆମର ଜଙ୍ଗଲ ରାଜ୍ୟକୁ ରକ୍ଷା କରିବା ପାଇଁ ନିଷ୍ଟୟ କରିବୁ ।

ବଲୁଆନନା ହସି କହିଲା, "ବାଃ ସାବାସ୍, ମୁଁ ତୁମମାନଙ୍କଠାରୁ ଠିକ୍ ଏଇଭଳି କଥା ଶୁଣିବାକୁ ଆଶା କରୁଥିଲି । ତୁମେମାନେ ତାହେଲେ ପ୍ରସ୍ତୁତ ହୋଇଯାଅ । ବାଘଗୁଲଟିକୁ ଠିକ୍‌ଠାକ୍ କରି ରଖ । ଜଂଗଲ ସୀମା ପାଖକୁ ସମସ୍ତେ ଯାଇ ରହିବ । ମୁଁ ଯାହାକୁ କହିବି ସେଇ ଏ ଗୁଲଟିକୁ ଘୋଡ଼ାହୋଇ ଯିବ । ଅନ୍ୟମାନେ ପାଖଆଖରେ ଲୁଚିକରି ରହିବେ । ଘଟଣା କ'ଣ କପରି ହେଲା ଜଂଗଲ ଭିତରକୁ ଖବର ଦେବେ ।

ଆଗ ମୋଟାସୋଟା, ତାଗଡ଼ା, ଡେଙ୍ଗା ବଲୁଆଟି ବାଘଗୁଲଟିକୁ ଦେଖି ତାର ଦୁଇଟି ମୁଣ୍ଡକୁ ଜଂଗଲ ଲଟାରୁ ଲଇଖଣ୍ଡେ ଆଣି ଏପରି ବାନ୍ଧିଦେଲା ଯେ ମୁଣ୍ଡ ଗଳାଇ ଘୋଡ଼ାହୋଇ ଦୌଡ଼ିଲେ ଗୁଲଟା ଦେହରୁ ଜମା ଖସି ପଡ଼ିବ ନାହିଁ । ସେଇଟି ଘୋଡ଼ାହୋଇ ସେ ଦୌଡ଼ ଦୌଡ଼ ସେଠି ଦୁଇଥର ବୁଲି ଆସିଲା । ତା'ର ବୁଦ୍ଧି ଦେଖି ବଲୁଆମାନେ ପ୍ରଶଂସା କଲେ । ବଲୁଆନନା ଖୁସିହୋଇ କହିଲା —ତାହେଲେ ଏ ଡେଙ୍ଗା ବଲୁଆଟି ପ୍ରଥମେ ଏ କାମରେ ହାତ ଦେଉ ।

## ଗୁପ୍ତଚର ଧରାପଡ଼ିଲା

ଦୁଇଦିନ ହେଲା ଜଙ୍ଗଲର ଖବର କିଛି ନପାଇ ସିଂହରାଜା ବଡ଼ ମନ କଷ୍ଟରେ ଥାଏ । ମନେ ମନେ ସେ ବଲୁଆନନାକୁ ଖୋଜୁଥିଲା । ହଠାତ୍ ବଲୁଆନନା ଆସି ପହଞ୍ଚିଗଲା । ତାଠାରୁ ସବୁ ଘଟଣା ଶୁଣି ସିଂହରାଜା ଖୁସିହେବା ସାଙ୍ଗେ ସାଙ୍ଗେ ବଲୁଆନନାର ବୁଦ୍ଧିକୁ ବହୁତ ପ୍ରଶଂସା କଲା । ସିଂହରାଜା କହିଲା, "ଆଉ ଡେରି ନକରି ବଲୁଆମାନଙ୍କୁ ଶୀଘ୍ର ତାଙ୍କ କାମରେ ପଠାଇଦିଅ ।"

ବଲୁଆନନା କହିଲା, "ଆଜ୍ଞା, ବଲୁଆମାନଙ୍କ ସାଙ୍ଗେ କଥାବାର୍ତ୍ତା ହୋଇ

ଆମର ସବୁ ଠିକ୍‌ଠାକ୍ ହୋଇଛି । ମୁଁ ଯେପରି ବତାଇଛି ସେମାନେ ଠିକ୍ ସେଇଭଳି କାମ କରିବେ । କିଛି ଅସୁବିଧା ହେବ ନାହିଁ ।" ଏହା କହିସାରି ସେ ଗୋଟିଏ ବାଲୁଆ ସିପାହି ହାତରେ ଜଙ୍ଗଲ ସୀମାରେ ରାଜାଙ୍କ ଆଦେଶ ଅପେକ୍ଷାରେ ଥିବା ଡେଙ୍ଗା ବାଲୁଆଙ୍କ ଦଳ ପାଖକୁ ଖବର ପଠାଇଦେଇ ଟିକେ ନିଶ୍ଚିନ୍ତ ହେଲା ।

ବାଲୁଆନନାର ମୁଣ୍ଡ ଟିକେ ହାଲୁକା ଲାଗୁଥିଲା । ନିଜ ଘରଆଡ଼େ ଟିକେ ବୁଲିଆସିବାକୁ ବାହାରିଛି, ସେ ଦେଖିଲା ଦୂରରୁ ଧୂଳି ଉଡ଼ାଇ ଠେକୁଆ, ମାଙ୍କଡ଼ ଭାଲୁ, ହରିଣ ପ୍ରଭୃତି ସେ ଆଡ଼କୁ ଆସୁଛନ୍ତି । ଦୁଇଟି ମାଙ୍କଡ଼ର ହାତ ଓ ଅଣ୍ଟା ଜଙ୍ଗଲଲଟାର ଲଇରେ ବନ୍ଧା ହୋଇଛି । ଭାଲୁଟାଏ ବାଡ଼ି ଖଣ୍ଡେ ଧରି ସେ ଦୁଇଟାକୁ ପାହାରେ ପାହାରେ ପିଟୁଛି । କିଏ ଧକାଏ ମାରୁଛି । ଠେଲାପେଲା ଟଣାଓଟରା କରି ସେ ଦି'ଟାଙ୍କୁ ସିଂହରାଜାଙ୍କ ଗୁମ୍ଫାଆଡ଼େ ଅଣାଯାଉଛି । କଥା-କଣ ବୁଝୁଁ ବୁଝୁଁ ଜଣାପଡ଼ିଲା—ସେଦିନ ଟିକେଟିକେଗୁଡ଼ାଏ ମାଙ୍କଡ଼ ଆସି ଗଣ୍ଡଗୋଳ କରୁଥିଲେ । ଅନ୍ୟମାନେ ତ ଖସି ପଳାଇଲେ—ତା' ଭିତରୁ ଦୁଇଜଣ ଧରାପଡ଼ି-ଗଲେ । ସେ ଦୁଇଟାକୁ ଅଣାହୋଇଛି—ରାଜାଙ୍କ ପାଖେ ବିଚାର ହେବ ।

ସମସ୍ତେ ଯାଇ ସିଂହରାଜା ପାଖେ ପହଞ୍ଚିଲେ । ହାତ ବନ୍ଧା ହୋଇଥିବା ମାଙ୍କଡ଼ ଦୁଇଟାକୁ ବହୁତ କଲବଲ ଲାଗୁଥିଲା । ତାପରେ ସିଂହରାଜାର ଭୟଙ୍କର ରୂପଟା ଦେଖି ତ ଦୁହେଁ ଖୁବ୍ ଡରିଗଲେ । ସିଂହରାଜା ଗର୍ଜନକରି ପଚାରିଲା— "କଣପାଇଁ ତୁମେମାନେ ଜଙ୍ଗଲ ଭିତରେ ଏତେ ଗଣ୍ଡଗୋଳ କରୁଛ ? ନିଜ ମନକୁ ଏପରି କରୁଛ ନା କିଏ ତୁମକୁ ଶିଖାଇ କରି ପଠାଇଛି ?" ରାଜାଙ୍କର କଥା ଶୁଣି ମାଙ୍କଡ଼ ଦି'ଟା ଭୟରେ ଥରୁଥାଆନ୍ତି—ତାଙ୍କ ପାଟିରୁ କଥା ବାହାରୁନଥାଏ ।

ବାଲୁଆନନା ମାଙ୍କଡ଼ ଦୁଇଟାଙ୍କ ପାଖକୁ ଯାଇ ତାଙ୍କ ପିଠିରେ ହାତମାରି ବହୁତ ନରମ ଭାବେ ବୁଝାଇ କହିଲା, "ତୁମେମାନେ ଡରୁଛ କାହିଁକି ? ଯାହା ଜାଣିଛ ସତ ସତ କହିଦିଅ । ଏଠି ତୁମକୁ କଣ କିଏ ବାଡ଼େଇପକାଉଛି ?"

ବାଲୁଆନନାର ନରମ କଥା ଶୁଣି ମାଙ୍କଡ଼ ଦୁଇଟାର ମନରେ ଟିକେ ସାହସ ହେଲା । ଏଥର ଟିକେ ଧୀରସ୍ଥିର ହୋଇ ଗୋଟିଏ ମାଙ୍କଡ଼ ହାତ ଯୋଡ଼ି କହିଲା, "ଆମର ଆଜ୍ଞା କିଛି ଦୋଷ ନାହିଁ । ଆମକୁ ତ ନଈ ସେପାରି ଜଂଗଲରେ ଗଧିଆ

ବାଘ ଶଗାବାଘ ଜଗିକରି ରହିଛନ୍ତି । ନଈ ଏପାରି ଜଂଗଲକୁ ଆସିବାକୁ ମନା-କରୁଛନ୍ତି । ଆମେ ତ ଜଂଗଲସାରା ବୁଲି କେତେ ସ୍ୱାଧୀନ ଭାବରେ ଚରୁଥିଲୁ, ପାଖ ଜଙ୍ଗଲରେ ଖେଳୁଥିଲୁ । ସେ ପାଖ ଜଙ୍ଗଲରେ ବୁଲୁଥିଲୁ, ଫଳମୂଳ ଖାଉଥିଲୁ ।



ବେଶ୍ ମଜାରେ ଥିଲୁ । କିନ୍ତୁ ଦିନେ ଆମେ ସେପଟ ଜଙ୍ଗଲରେ ପାହାଡ଼ ପାଖ ପିଜୁଳି ଗଛରେ ବସି ପିଜୁଳି ଖାଉଛୁ, ଆମପାଖେ ହେଟାବାଘ ଶଗାବାଘ ପହଞ୍ଚି

କହିଲେ—ମହାବଳବାଘଙ୍କର ହୁକୁମ ହୋଇଛି ନଈ ଏ ପାଖରେ ଯେତେ ପଶୁପକ୍ଷୀ ଅଛନ୍ତି, କେହି ଆଉ ନଈ ସେପାଖ ଜଙ୍ଗଲକୁ ଯାଇପାରିବେ ନାହିଁ । ଏ ଜଙ୍ଗଲରାଜ୍ୟରେ ଆମର ମହାବଳ ବାଘ ରାଜା ହୋଇଛନ୍ତି । ତୁମେମାନେ ଆଉ ସିଂହରାଜାଙ୍କୁ ମାନିବା ଦରକାର ନାହିଁ । ଆମ ମହାବଳବାଘ ସିଂହରାଜାଙ୍କଠାରୁ କୋଉ ଗୁଣରେ କମ୍ କି ? ସେ ତ ଆଉ ସିଂହରାଜାଙ୍କୁ ମାନି ତାଙ୍କର ମନ୍ତ୍ରୀ ହୋଇ ରହିବାକୁ ରାଜି ନାହାନ୍ତି । ଯଦି ଏପଟରେ ଥିବା କୋଉ ପଶୁପକ୍ଷୀ ଆମ କଥାକୁ ଅମାନ୍ୟ କରେ, ବାଘରାଜା ତାଙ୍କୁ କଠିନ ଦଣ୍ଡ ଦେବେ ।

"ସେହିଦିନଠାରୁ ଆମେ ତାଙ୍କୁ ମାନି ଚଳୁଛୁ । ଏପାଖ ଜଙ୍ଗଲରେ ଯେଉଁ ପଶୁପକ୍ଷୀଙ୍କର ପିଲାଛୁଆ କି ବାପା ମା' ରହିଯାଇଥିଲେ, କୁଆ ହାତରେ ଖବର ପଠାଇ ସେମାନଙ୍କୁ ଆମ ପାଖକୁ ଡାକନେଇଛୁ । ଆମ କଥା ତ ସବୁ କହିଲୁ । ଆମର କିଛି ଦୋଷ ନାହିଁ । ଆମକୁ ଛାଡ଼ିଦିଅନ୍ତୁ । ଆମେ ଆଉ କେବେ ଏଆଡ଼େ ଆସିବୁ ନାହିଁ ।"

ମାଙ୍କଡ଼ ପାଟିରୁ କଥା ସରିଛି କି ନାହିଁ, ଏପଟ ଜଙ୍ଗଲର ହନୁମାଙ୍କଡ଼ଟାଏ ଖିଙ୍କାରି ହୋଇ ଆସି କହିଲା, "ତୁମର ତ କିଛି ଦୋଷ ନାହିଁ—ଆଉ କାଲି ଝଗଡ଼ା, ଗଣ୍ଡଗୋଳ ଲଗାଇବାକୁ ଚାଲିଆସୁନ୍ତ କେମିତି ?"

ବନ୍ଧାହୋଇଥିବା ଅନ୍ୟ ମାଙ୍କଡ଼ଟି କହିଲା, "ଯେଉଁଦିନ ଏପଟ ଜଙ୍ଗଲରେ ମଉଜ ମଜଲିସ୍‌ର ଦିନ ଥାଏ, ବହୁତଗୁଡ଼ାଏ ପଶୁପକ୍ଷୀ ଏକାଠି ହୋଇଥାଆନ୍ତି, ଗଣ୍ଡଗୋଳ ଝଗଡ଼ା କରି ମାରଧର କରିବାପାଇଁ ଆମକୁ ବାଘରାଜାଙ୍କର ହୁକୁମ ଆସେ । ଆମ ନିଜର ଇଚ୍ଛା ନଥିଲେ ବି ବାଧ୍ୟହୋଇ ଆମେମାନେ ଆସୁଛୁ । କୁଆ ଓ ଅନ୍ୟ କେତେକ ଚଢ଼େଇ ଏ ଜଙ୍ଗଲର ଖବର ବୁଝି ବାଘରାଜାଙ୍କୁ ଯାଇ କହନ୍ତି । ଏହି ଗଣ୍ଡଗୋଳ ଯୋଗୁ ଆମର ବହୁତ ଅସୁବିଧା ହେଉଛି ସତ; କିନ୍ତୁ ଆମେ ଆମର ମନକଥା କାହାକୁ କହିପାରୁ ନାହୁଁ । ଲଢ଼େଇ ଝଗଡ଼ା କରି ପଶୁ-ପକ୍ଷୀମାନେ ଖଣ୍ଡିଆଖାବରା ହେଉଛନ୍ତି । କେତେକଙ୍କର ଜୀବନ ମଧ୍ୟ ଯାଉଛି । କିନ୍ତୁ ବାଘମାନଙ୍କ ଡରରେ ସମସ୍ତେ ମନ ଖରାପ କରି ଚୁପ୍‌ଚାପ୍ ରହୁଛନ୍ତି ।"

ବର୍ତ୍ତମାନ ସିଂହରାଜା, ଭାଲୁଆନନା ଓ ଅନ୍ୟ ପଶୁପକ୍ଷୀମାନଙ୍କର ସବୁ ଘଟଣା ବୁଝିବାକୁ ଆଉ କିଛି ବାକି ରହିଲା ନାହିଁ । ଏଥର ସିଂହରାଜା କହିଲା,

"ମହାବଳବାଘ ରାବଣ ଏଇଭଳି ଗଣ୍ଡଗୋଳ, କଳି, ଝଗଡ଼ା ସମସ୍ତଙ୍କ ଭିତରେ ଲଗାଇଦେଲେ ଆସ୍ତେ ଆସ୍ତେ ସବୁ ପଶୁପକ୍ଷୀ ତାକୁ ରାଜାବୋଲି ମାନିଯିବେ । ଠିକ୍ ଅଛି, ମହାବଳ ତାର ମନେ ମନେ ରାଜା ହୋଇଥାଉ । ଆଜି ଠାରୁ ପାଞ୍ଚ ଦିନ ଭିତରେ ଜଙ୍ଗଲକୁ ଶିକାରୀଦଳ ଆସିଗଲେ ମହାବଳର ରାଜା-ହେବା ନିଶା ଛାଡ଼ିଯିବ ।" ସିଂହରାଜା ପୁଣି କହିଲା, "ତୁମେମାନେ ଏ ଗୁପ୍ତଚର ମାଙ୍କଡ଼ ଦୁଇଟିକୁ ନେଇ ଗୁମ୍ଫାର ପଛପଟ ବନ୍ଦଶାଳାରେ ବନ୍ଦକରି ରଖ । କେହି ସେମାନଙ୍କୁ ମାରମାରି କରି ହଇରାଣ କରିବ ନାହିଁ । ଖାଇବାକୁ ପିଇବାକୁ ଦେବ । ସବୁକଥା ସମାଧାନ ହେବାଯାଏ ସେମାନେ ଥାଆନ୍ତୁ । ତା'ଛଡ଼ା ତୁମେମାନେ ଏଇ କେତେଦିନ ଟିକେ କଷ୍ଟକରି ସାବଧାନରେ ଚଳିବ । ସମସ୍ତେ ଜଗିଥିବ—ଆମ ଜଙ୍ଗଲର କିଛି ଖବର ଯେପରି ନଦୀ ସେପାରି ବାଘମାନଙ୍କ ପାଖରେ ନପହଞ୍ଚେ ।"

ବନ୍ଦୀ ମାଙ୍କଡ଼ ଦୁହିଁଙ୍କୁ ଗୋଟେ ଭାଲୁ ପଦ୍ମପତ୍ରରେ ପାଣିଆଣି ପିଇବାକୁ ଦେଲା । ଖାଇବାପାଇଁ ଫଳମୂଳ କିଛି ଦେଇ ପଶୁପକ୍ଷୀମାନେ ଯେଝା ଘରକୁ ଗଲେ । ଜଗୁଆଳି କୁକୁର କେତୋଟିଙ୍କୁ ଗୁମ୍ଫାର ଦ୍ୱାରପାଖରେ ଜଗାଇଦେଇ, ଭାଲୁଆନନ୍ଦ ତା ଘରକୁ ଗଲା ।

## କଳି ତୁଟାଇବାକୁ କୌଶଳ ଖଞ୍ଜାଗଲା

ଜଙ୍ଗଲଠାରୁ କିଛି ଦୂରରେ ଥିବା ଗୋଟିଏ ଗାଁ । ସେଦିନ ହୋଇଥାଏ ଦୋଳ-ପୂର୍ଣ୍ଣିମା । ଗାଁରେ ଦୋଳ ଉତ୍ସବ ଚାଲିଥାଏ । ପିଲାଠାରୁ ବୁଢ଼ାଯାଏଁ ଗାଁସାରା ସମସ୍ତଙ୍କ ମନ ଖୁସି । ଠାକୁରମନ୍ଦିରରେ ପୂଜା, ଭୋଗରାଗ ବେଶ୍ ଧୁମ୍-ଧାମ୍‌ରେ ଚାଲିଛି । ଲୋକମାନେ ଯାଉଛନ୍ତି, ଠାକୁର ଦର୍ଶନ କରି ଆସୁଛନ୍ତି । ମନ୍ଦିର ପାଖରେ ବାଜା ବାଜୁଛି । ସଂକୀର୍ତ୍ତନ ହେଉଛି । ନାଚ ଗୀତ ଚାଲିଛି । ଗାଁର ଅଧିକାଂଶ ଲୋକ ସେଇଠି ଜମିଛନ୍ତି । ନାନା ରକମ କାମରେ ସମସ୍ତେ ବ୍ୟସ୍ତ

ଅଛନ୍ତି । କେଡ଼େ ସୁନ୍ଦର ଜହ୍ନ ଆଲୁଅ ଗଛ ଆଡ଼େ ପଡ଼ୁଛି । ପିଲାମାନେ ଦୌଡ଼ା-ଦୌଡ଼ି ହୋଇ ଖେଳୁଛନ୍ତି । ଆନନ୍ଦରେ ହସି ମାତି ପାଟି କରୁଛନ୍ତି ।

ଟେଙ୍ଗ୍ଚୁ ବାଲୁଆ କେତେବେଳୁ ଯାଇ ଗାଁରେ ପହଞ୍ଚିଯାଇଛି । ସଂଧ୍ୟା ପରେ ପରେ ସେ ଗାଁ ପାଖାପାଖି ଆମ୍ବତୋଟା ଭିତରେ ଲୁଚି ଲୁଚି ବୁଲୁଛି । ଦୂରେଇ ଦୂରେଇ ରହି ଗାଁ ଲୋକଙ୍କର ଆନନ୍ଦଉତ୍ସବ ଦେଖୁଛି । ଏଇ ସୁଯୋଗରେ ସେ ଆଗେଇଆସି ପିଲାମାନେ ଖେଳୁଥିବା ଜାଗାର ପାଖାପାଖି ଗୋଟିଏ ବଡ଼ ଝଙ୍କାଳିଆ ଆମ୍ବଗଛମୂଳେ ବସି ପିଲାମାନଙ୍କର ଖେଳ ଦେଖୁଥାଏ; କିନ୍ତୁ ତାର ଆଖିଥାଏ ସବୁଠାରୁ ଶ୍ରେଷ୍ଠ ପିଲାଟି ମିଣ୍ଟୁ ଉପରେ । ସେ ଭାବୁଥାଏ ଏଇ ପିଲାଟିକୁ ନେଇଯିବ ।

କିଛି ସମୟ ପରେ ପିଲାମାନେ ପାଟିକରି ସେଇ ଆମ୍ବଗଛ ପାଖ ଦେଇ ଦୌଡ଼ି-ଗଲେ । ଶ୍ରେଷ୍ଠପିଲାଟି ମିଣ୍ଟୁ ଟିକେ ପଛରେ ପଡ଼ିଗଲା । ଟେଙ୍ଗ୍ଚୁ ବାଲୁଆ ସାଏଁ-କିନା ଏକ କୁଦାମାରି ମିଣ୍ଟୁକୁ ଉଠାଇନେଇ ଦୌଡ଼ିଲା । ମିଣ୍ଟୁ ଭୟରେ ଚିତ୍କାରକରି କାନ୍ଦିଉଠିଲା । ଅନ୍ୟ ପିଲାମାନେ ତାର କାନ୍ଦ ଶୁଣି ତା ଆଡ଼କୁ ଚାହିଁ ଏକାବେଳକେ ପାଟିକରି ଉଠିଲେ—'ମିଣ୍ଟୁକୁ ବାଘ ନେଇଗଲା' ବାଘ ନେଇଗଲା ।' ଗାଁର ଲୋକମାନେ ପୂଜା ଉତ୍ସବ ଛାଡ଼ି ବାଘ କୁଆଡ଼େ ଗଲା ବୋଲି ଠେଙ୍ଗା ବାଡ଼ି ଧରି ଚାଲିଆସିଲେ । ଜହ୍ନ ଆଲୁଅରେ କେତେକ ଦେଖିଲେ ଯେ ମିଣ୍ଟୁକୁ ବାଘଟାଏ ନେଇନେଇ ଜଙ୍ଗଲ ରାସ୍ତା ଆଡ଼କୁ ପଳାଉଛି । ସମସ୍ତେ ପାଟି-କରି ଜଙ୍ଗଲରାସ୍ତା ଆଡ଼କୁ ଦୌଡ଼ିଲେ । ବାଘ ବି ଦୌଡ଼ୁଥାଏ ।

ସେତେବେଳକୁ ଟେଙ୍ଗ୍ଚୁ ବାଲୁଆ ତାର ସବୁ ବଳ ଖଟାଇ ବହୁତ ଗୁଡ଼ାଏ ବାଟ ଦୌଡ଼ି ଚାଲିଯାଇଥିଲା । ସେଇଠି ବୁଦୁବୁଦିକିଆ ଜଙ୍ଗଲ ଥାଏ । ବଡ଼ ଜଂଗଲ ଆଉ ଅଳ୍ପ ବାଟ । କିନ୍ତୁ ମିଣ୍ଟୁକୁ ସେ ସେଇଠାରେ ପକାଇଦେଇ ନିଜେ କିଛି ଦୂରରେ ଗଛ ଗହଳରେ ଯାଇ ଲୁଚିବସିଲା । ମିଣ୍ଟୁ ତ ବହୁତ ଡରିଯାଇଥାଏ—ସେ କିଛି ସମୟ ଚୁପ୍‌ଚାପ୍ ପଡ଼ିରହିଲା । ଦୂରରେ ଲୋକମାନଙ୍କର ପାଟି ଶୁଣି ତାର ଟିକେ ସାହସ ହେଲା । ଏଥର ସେ ଚିତ୍କାର କରି କାନ୍ଦିଲା । ତାର କାନ୍ଦ ଶୁଣିପାରି ଗାଁର ଲୋକମାନେ ଆସି ତା ପାଖରେ ପହଞ୍ଚିଗଲେ । ତାକୁ ତଳୁ ଉଠାଇ କାଖକରି ବୁଝାବୁଝି କରି ନେଇଗଲେ । କେତେଜଣ ପାଖଆଖରେ ବାଘକୁ କିଛି ସମୟ ଖୋଜାଖୋଜି କଲେ । ଦେଖିବାକୁ ନପାଇ ଭାବିଲେ—

ଏତେ ଲୋକଙ୍କର ପାଟି ଶୁଣି ବାଘଟା ବୋଧହୁଏ ଡରିଯାଇ ମିଠୁକୁ ଛାଡ଼ି ଜଂଗଲ ଆଡ଼େ ପଳାଇଛି । ପିଲାଟିକୁ ଭଲରେ ଚାଇ ମନଖୁସିରେ ସେମାନେ ଗାଁକୁ ଫେରିଗଲେ । ଗାଁରେ ଲୋକମାନେ ଏ ଘଟଣା ପରେ ଟିକେ ସତର୍କରେ ଚଳିଲେ ।

ବଲୁଆମାନେ ସକାଳୁ ସକାଳୁ ଏ ଖବରଟି ଚାରି ହାତରେ ଦଳପତି ବଲୁଆନନା ପାଖକୁ ପଠାଇଦେଲେ । ବଲୁଆନନା ସିଂହରାଜାକୁ କହିଲା । ସିଂହ-ରାଜା ସବୁ କଥା ଶୁଣି ମନେ ମନେ ଭାରି ଖୁସି ହୋଇଗଲେ । ବଲୁଆନନାର କୌଶଳଟି ଯେ ଠିକ୍ କାମଦେଲା ସେଥିପାଇଁ ତାର ମନ ମଧ୍ୟ ଭାରି ଖୁସି ।

ପୁଣି ତିନି ଚାରିଦିନ ପରେ, ଢେଂଗୁ ବଲୁଆ ଅନ୍ୟ ଏକ ଗାଁକୁ ଗଲା । ସେଇ ବାଘଛାଲଟିକୁ ଦେହରେ ଠିକ୍ ଭାବେ ସଜାଡ଼ ହୋଇଥାଏ । ସେଦିନ ବାହାରେ କେଉଁଠି ପିଲାଛୁଆ ଖେଳୁଥିବାର ଦେଖିଲା ନାହିଁ । ତା’ ମନଟା ବହୁତ ଖରାପ ହୋଇଗଲା । ତାପରେ ସେ ଯାଇ ଜଣକର ବଗିଚାର ବାଡ଼ ଠାଏ ଭାଂଗି ତାଙ୍କର ବଗିଚା ଭିତରେ ଲୁଚି ବସିଲା । ଗାଁର କୁକୁର ଗୁଡ଼ାକୁ ତାର ଭାରି ଭୟ । ସେମାନେ ଯଦି ଢେଂଗୁକୁ ଦେଖିନେବେ ନା, ଠିକ୍ ଜାଣିନେବେ ଯେ ଏଇଟା ବାଘ ନୁହେଁ, ଗୋଟାଏ ବଲୁଆ । ତାପରେ ସବୁକଥା ଗୋଳମାଳ ହୋଇଯିବ । ତାଛଡ଼ା ବଲୁଆକୁ ଦେଖି କୁକୁର ଗୁଡ଼ାକ ଭୁକାଭୁକ କଲେ ଗାଁ ଲୋକେ ମଧ୍ୟ ଠେଂଗା ବାଡ଼ି ଧରି ଗୋଡ଼ାଇବେ । ତେଣୁ ସେ ଗାଁ ପଛପଟରେ ଧାନବିଲ ଭିତରେ ପଶି ପାଣିକାଦୁଅରେ ଓଦା ହୋଇ କେତେ କଷ୍ଟରେ ଆସିଛି ଓ ଯୋଉ ବାଟ ଦେଇ ଆସିଚି, ସେଇ ବାଟରେ ଫେରି ଆସିବାକୁ ମନରେ ଭାବୁଛି ।

ସେଇ ବଗିଚାରେ ଲୁଚି ଲୁଚି ଆସ୍ତେ ଆସ୍ତେ ବାଡ଼ି କବାଟ ପାଖକୁ ଗଲା । ଭାଗ୍ୟକୁ କବାଟଟା ଖୋଲା ଥାଏ । ଅଗଣାରୁ ଲୋକମାନଙ୍କର ପାଟି ଶୁଭୁଥାଏ ସେଇଠି ଲୁଚିରହି ସେ ଅଗଣାକୁ ଚାହିଁଲା । ଦେଖିଲା ଘର ଅଗଣାରେ ଖିଆପିଆ ଚାଲିଛି । ସେଠାରେ ଗୋଟିଏ ଖଟ ଉପରେ ଦୁଇବର୍ଷର ଟିକି ଝିଅଟିଏ ବେଶ୍ ଆରାମରେ ଶୋଇଛି । ଏହା ଦେଖି ମନଟା ତା’ର ଟିକେ ଖୁସି ହୋଇଗଲା । ଅଗଣାରେ ଘର ଲୋକମାନେ ଗପସପ କରି ଖିଆପିଆରେ ବ୍ୟସ୍ତ ଥାଆନ୍ତି । ପିଲାକୁ କାହାର ନଜର ନଥାଏ । ଢେଂଗୁ ଏଇ ସୁଯୋଗରେ ଶୋଇଥିବା ଟିକି ଝିଅଟିକୁ ଟେକିନେଇ ବଗିଚାରେ ଯେଉଁଠି ବାଡ଼ଭାଂଗି ରାସ୍ତା କରିଥିଲା, ସେଇ

ବାଟରେ ପଳାଇଲା । ଏଥିରେ ପିଲାଟିର ନିଦ ଭାଙ୍ଗିଗଲା । ସେ ଚିରଚିରା ପାଟିରେ କାନ୍ଦିଉଠିଲା । ପିଲାର କାନ୍ଦ ଶୁଣି ତା'ର ମା' ବାଡ଼ି କବାଟ ପାଖକୁ ଆସି ଝିଅଟିକୁ ବାଘ ଧରିଛି ଦେଖି କାନ୍ଦି ଚିତ୍କାର ଛାଡ଼ିଲା, "ମୋ ଝିଅକୁ ବାଘ ନେଇଗଲା, ଦୌଡ଼ିଆସ, ଦୌଡ଼ିଆସ ।" ଖାଇବା ପାଖରୁ ଉଠି ଘରଲୋକମାନେ ଠେଂଗା-ବାଡ଼ି ଧରି ଦୌଡ଼ିଲେ ।

ଟେଂଗୁ ଭାଲୁଆ ସେତେବେଳକୁ ବିଲମାନ ଟପି ଜଂଗଲଆ ରାସ୍ତା ଧରି ପ୍ରାଣବିକଳରେ ଦୌଡ଼ୁଥାଏ । ପଛରୁ ଲୋକମାନଙ୍କର ପାଟି ଶୁଭୁଥାଏ—"ହେଇ ଏବାଟେ ଗଲା, ସେବାଟେ ଗଲା ।" କିଏ କହୁଛି 'ହେଟାବାଘଟେ', ପୁଣି କିଏ କହୁଛି 'ନାହିଁ, ଗ୍ରେଟ ମହାବଳବାଘ' । ଛୁପି-ଛୁପିକା ଜହ୍ନ ଆଲୁଅରେ ଠିକ୍ ଜଣାପଡ଼ୁନଥାଏ । ଆଉ କେତେଜଣ ମଟର ସାଇକେଲ୍ ଚଢ଼ି ଠେଙ୍ଗା, ଟର୍ଚ୍ଚ-ଲାଇଟ୍ ଧରି ଆସିଗଲେ । ପାଦରେ ଦୌଡ଼ିବା ଲୋକ କେତେ ଶୀଘ୍ର ବା କେତେ ବାଟ ଯିବେ ? ମଟର ସାଇକେଲ୍ ଚଢ଼ାଳି ତିନିଜଣ ଜଙ୍ଗଲ ଆଡ଼କୁ ଗାଡ଼ି ଚଳାଇ ଥାଆନ୍ତି ।

ଟେଙ୍ଗୁ ଭାଲୁଆ ପିଲାଟିକୁ ଧରି ଜଙ୍ଗଲର ସୀମା ପାଖାପାଖି ବହୁତ ଗୁଡ଼ାଏ ବାଟ ଚାଲିଯାଇଥିଲା । କିନ୍ତୁ ଏଇ ମଟର ସାଇକେଲ୍ ଚଢ଼ାଳିଙ୍କୁ ଦେଖି ତା'ର ଭାରି ଡର ହେଲା । ତେଣୁ ଜଙ୍ଗଲର ସୀମା ପାଖେ ପିଲାଟିକୁ ଛାଡ଼ିଦେଇ ସେ ଜଙ୍ଗଲର ଗଛ ଗହଳକୁ ଯାଇ ଲୁଚିକରି ବସିଲା । ଅନ୍ୟ ଭାଲୁଆମାନେ ମଧ୍ୟ ଦୂରେଇ ଦୂରେଇ ଲୁଚି ବସିଥାଆନ୍ତି ।

ମଟର ସାଇକେଲ୍‌ରେ ବସି ଗୋଡ଼େଇଥିବା ଲୋକମାନେ ଆସି ପହଞ୍ଚିଗଲେ । ଟିକି ପିଲାଟି ସେତେବେଳକୁ ବଡ଼ ପାଟି କରି ବିକଳ ହୋଇ କାନ୍ଦୁଥାଏ । ପିଲାର କାନ୍ଦ ଶୁଣି ସେମାନେ ଯାଇ ପିଲାଟିକୁ ଉଠାଇ କୋଳରେ ଧରିନେଲେ । କିଛି ସମୟ ପରେ ପିଲାର କାନ୍ଦ କମିଗଲା । ତା'ପରେ ଜଣେ ପିଲାଟିକୁ ବୁଝାଉଥାଏ ଓ ଅନ୍ୟ ଦୁଇଜଣ ଟର୍ଚ୍ଚଲାଇଟ୍ ପକାଇ ଜଂଗଲର ଗଛ ଭିତରକୁ ଚାହିଁ କିଛି ସମୟ କ'ଣ ଖୋଜାଖୋଜି କଲେ । ତାପରେ ପିଲାଟିକୁ ସାଥିରେ ନେଇ ମଟର ସାଇକେଲ୍‌ରେ ବସି ଗାଁ ଆଡ଼କୁ ଫେରିଗଲେ । ଏମାନଙ୍କର ବୋଧହୁଏ ଧାରଣା ହେଲା—ମଟରସାଇକେଲ୍ ଆବାଜ ଶୁଣି ବାଘଟା ପିଲାକୁ ଛାଡ଼ି ଡରରେ ପଳାଇଛି । ଆନନ୍ଦର କଥା, ପିଲାର କିଛି କ୍ଷତି ହୋଇନାହିଁ ।

ଡେଙ୍ଗା ଭଲୁଆ ସେଦିନ ବହୁତ ଭାଲିଆ ହୋଇପଡ଼ିଥାଏ । ତାର ଗୋଡ଼ କଣ୍ଟାଝଟା ଲାଗି ଖଣ୍ଡିଆଖାବରା ହୋଇଯାଇଥାଏ । ତା'ର ସାଙ୍ଗ ଭଲୁଆମାନେ ଆସି ପହଞ୍ଚିଗଲେ । ସେମାନେ ଡେଂଗୁର ବୁଦ୍ଧିକୁ ପ୍ରଶଂସା କରି କହିଲେ, "ଏଥର ଟିକେ ବିଶ୍ରାମ ନେଇ କିଛି ଦିନ ଛଡ଼ାରେ ପୁଣି ଅନ୍ୟ ଗାଁଆଡେ ଯିବା ।" ବାଘ ଗ୍ଲାଲଟିକୁ ସାଇତି ରଖିଲେ । ସେଦିନରୁ ଖବର ପାରିମାନଙ୍କ ହାତରେ ଜଂଗଲକୁ ପଠାଇଦେଲେ । ଖବର ହେଉଛି—ଗାଁଲୋକମାନେ ବାଘ ଉପରେ ରାଗିଗଲେଣି । ଦିନବେଳା ଜଂଗଲଆଡେ ଆସିବେ ବୋଲି ସେମାନେ କଥାବାର୍ତ୍ତା ହେଉଥିଲେ ।

## କଳି ତୁଟିଲା—ଜଙ୍ଗଲରାଇଜ ଶାନ୍ତ ହେଲା

ନଈ ସେପାରି ଜଂଗଲର ରାଜା ମହାବଳବାଘ ଗୁଳି-ପାଞ୍ଚଦିନ ହେବ ଖାଲି ଅସ୍ତବ୍ୟସ୍ତ ହୋଇ ବାଟେ଼ଇ କରୁଡ଼ ହେଉଛି । ଡାମରାକୁଆ କେତୋଟିଙ୍କୁ ଗୁପ୍ତଚର ଭାବରେ ସିଂହରାଜାର ଜଂଗଲ ଆଡ଼େ ଗୁଳିଦିନ ହେବ ପଠାଯାଇଛି—ଏଯାଏଁ ସେମାନେ ଫେରିଲେ ନାହିଁ । ତେଣୁ ସେପାଖ ଜଂଗଲର କିଛି ଖବର ବାଘରାଜା ଜାଣିପାରୁନାହିଁ । ତା'ଛଡ଼ା ତା'ର ପାଖଲଗା ବାଘମାନେ କେମିତି ଟିକେ ଦୂରେଇ ଦୂରେଇ କରିଛଡ଼ା ଦେଇ ରହୁଛନ୍ତି । ଏମିତି ନାନା ପ୍ରକାର ଚିନ୍ତାରେ ବାଘରାଜାର ମନଟା ଭଲରହୁନାହିଁ ।

ଅନ୍ୟ ସବୁ ଶ୍ରେଷ୍ଠ ମହାବଳବାଘ, ହେଣ୍ଟାବାଘ, ଚିତାବାଘ ଓ ଗଧିଆ ବାଘ ପ୍ରଭୃତି ବିଚରା ନଈ ସେପାରି ଜଂଗଲରେ ଏକ ପ୍ରକାର ବନ୍ଦୀଭାବେ ରହିଛନ୍ତି । ସିଂହରାଜାର ଜଙ୍ଗଲରେ ଯେଉଁ କଡ଼ାକଡ଼ି ଜଗିବା ବ୍ୟବସ୍ଥା ହୋଇଛି, ସେମାନେ ସେହି ଡରରେ ଏପଟେ ଜଂଗଲକୁ ଆସିବାକୁ ସାହସ କରୁନାହାନ୍ତି । ସମସ୍ତ ମୁହଁଟିମାନ ଶୁଖାଇ ଗୋଟିଏ ଗଛମୂଳେ ଅଧାଶୁଆ, ଅଧାବସା, ଅବସ୍ଥାରେ ଥାଆନ୍ତି । ହଠାତ୍ ହେଣ୍ଟାବାଘ ମୁଣ୍ଡରେ କ'ଣ ପଶିଲା କେଜାଣି, ସେ କହିଲା, "ଆମ ମହାବଳବାଘଙ୍କ ମନରେ ଏ ନଈ ସେପାରି ଜଙ୍ଗଲ ରାଜ୍ୟରେ

ରାଜା ହେବା ଇଚ୍ଛା କାହିଁକି ହେଲା ? ଏଥିରେ କିଛି ଲାଭନାହିଁ । ସବୁ ପ୍ରକାରର ପଶୁପକ୍ଷୀ ତ ବେଶି ସଂଖ୍ୟାରେ ସେପଟ ଜଂଗଲରେ ରହିଗଲେ । ତା'ଛଡ଼ା ଯେତେକ ବୁଦ୍ଧିଆ ଶୃଗାଳ ଚତୁର ପଶୁ ସମସ୍ତେ ସିଂହରାଜାର ଜଂଗଲରେ ଅଛନ୍ତି ।"

ହେଣ୍ଟାବାଘର କଥା ନସରୁଣୁ ଶ୍ରେଷ୍ଠ ମହାବଳବାଘ ଓ ଚିତାବାଘ ମଧ୍ୟ ଏକା ସାଂଗେ କହିଲେ, "ଭାଇ, ତୁ ଠିକ୍ ଆମର ମନକଥା କହିଦେଲୁ । ସତରେ ଆମର ଏ ବାଘଦଳଙ୍କୁ ଛାଡ଼ିଦେଲେ ଏ ପାଖରେ ଆଉ କିଏ ବା ଅଛି ? ଯେଉଁ ଅଳ୍ପ ପଶୁପକ୍ଷୀ ବାଧ୍ୟ ହୋଇ ଅଛନ୍ତି, ସେମାନଙ୍କ ମନରେ ତ ସୁଖ ନାହିଁ । କେଡ଼େ ମୂଢର ଏପଟ ସେପଟ ବୁଲି ଆମେ ମନ ଖୁସିରେ ଥିଲୁ । ଜଙ୍ଗଲରେ ଏମିତି ଭାଗ ଭାଗ ହୋଇ ରହିଲେ ଲାଗୁଛି, ଆମର ଭାଇ ଭାଇ ଭିତରେ ଯେପରି କଳିକଜିଆ, ଝଗଡ଼ା ସବୁବେଳେ ଲାଗିରହିବ ।"

ହେଣ୍ଟାବାଘ କହିଲା, "ତାହାହେଲେ ଚାଲ ସମସ୍ତେ ସାଙ୍ଗହୋଇ ମହାବଳବାଘ ପାଖକୁ ଯାଇ ଆମର ମନକଥା କହିବା । ଆମେ ଏତେ ଜଣ ଏକାଠି ହୋଇ କହିଲେ ହୁଏତ ମହାବଳ ବାଘ ନରାଗି ବରଂ ସବୁକଥା ଠିକ୍ ବୁଝିପାରିବେ ।"

ଏହି ବାଘମାନେ ଯାଇ ମହାବଳବାଘ ପାଖେ ପହଞ୍ଚିଲେ । ସେମାନେ ଦେଖିଲେ ଗୁପ୍ତଚର ରୂପେ ପଠାଯାଇଥିବା ଡାମରା କୁଆ ତିନି-ଚାରିଟି ଫେରିଆସି ଯାହା ଯାହା ଖବର ଆଣିଛନ୍ତି, କହୁଛନ୍ତି । ବାଘମାନେ ନିଜନିଜର ମନକଥା ଆଉ କଣ କହିବେ—ଚୁପ୍‌ଚାପ୍ ବସି କୁଆମାନଙ୍କ କଥା ଶୁଣିଲେ ।

ଡାମରା କୁଆମାନେ କୌଣସି ଗଣ୍ଡଗୋଳ ନକରି ସିଂହରାଜାଙ୍କ ଜଙ୍ଗଲର କୁଆମାନଙ୍କ ସାଙ୍ଗେ ସାଙ୍ଗସୁଖ ହୋଇ ବଡ଼ କଷ୍ଟରେ ଖବରସବୁ ଆଦାୟ କରି-ଛନ୍ତି—ଭାଲୁଆନନା କପରି ମଣିଷମାନଙ୍କୁ ବାଘମାନଙ୍କ ଉପରେ ରଗାଇବାର ଉପାୟ କରିଛି । ତା'ଛଡ଼ା ଜଙ୍ଗଲରେ ସମସ୍ତେ ଏତେ ଜଗିରଖି ଚଳୁଛନ୍ତି ଯେପରି ସେପାଖର କୌଣସି ଖବର ଏପଟକୁ ଆସିନପାରିବ । ଏ ପଟର ଗୁପ୍ତଚର ମାଙ୍କଡ଼ ଦୁଇଟି ବନ୍ଦୀହୋଇ ଅଛନ୍ତି ।

ସବୁ ଖବର ଶୁଣିବା ପରେ ବାଘମାନେ ଟିକେ ଡରିଗଲେ । ମହାବଳବାଘର ଚିନ୍ତା ମଧ୍ୟ ବଢ଼ିଗଲା । ସେ ଭାବୁଥାଏ—ସତରେ ଯଦି ଶିକାରୀମାନେ ବାଘ

ଶିକାର କରିବାକୁ ଜଙ୍ଗଲ ଭିତରକୁ ଆସିଯାଆନ୍ତି, ତାହାହେଲେ ବଡ଼ ବିପଦ ପଡ଼ି-ଯିବ । ଶିକାରୀମାନଙ୍କୁ କଣ ବିଶ୍ୱାସ ? ଥରେ ସେମାନଙ୍କୁ ଶିକାର ନିଶା ଲାଗିଗଲେ ସେମାନେ କ'ଣ ସହଜେ ଏ ଜଙ୍ଗଲକୁ ଛାଡ଼ି ଯିବେ ? ବାଘ ଶିକାର କରୁକରୁ ହରିଣ, ସମ୍ବର, ଠେକୁଆ ଓ ବିଭିନ୍ନ ପ୍ରକାରର ଚଢ଼େଇ ଏମିତି ସବୁ ପ୍ରକାର ଶିକାର କରିବେ । ସତରେ ଏ ଜଙ୍ଗଲଟା ଛାରଖାର ହୋଇଯିବ । ମହାବଳବାଘ ଏବେ ଆଉ ନିଜ ସେପାରି ଜଙ୍ଗଲ ରାଜ୍ୟରେ ରଜାହେବା କଥା ଭାବୁନଥିଲା— ସେ ପୂରା ବଡ଼ ଜଙ୍ଗଲର କଥା ଭାବୁଥିଲା ।

ଏତିକିବେଳେ ଆଉ ଦୁଇଟି କୁଆ ଆସି ସେଠାରେ ପହଞ୍ଚିଲେ । ସେମାନେ ଜଙ୍ଗଲ ପାଖର ଗାଁଆଡ଼େ ଉଡ଼ିଯାଇଥିଲେ । ସତରେ ସେଠାରେ ବାଲୁଆମାନେ କ'ଣ କଅଣ କାମ କରୁଛନ୍ତି —ଗାଁର ଲୋକମାନେ ବାଘ ଉପରେ ରାଗି କ'ଣ ସବୁ ବିଚାର କରୁଛନ୍ତି ଏସବୁ କଥା ବୁଝି ଆସିଥିଲେ । କୁଆ ଦୁଇଟି କହିଲେ, ଡେଙ୍ଗା ବାଲୁଆ ବାଘଛାଲ ଘୋଡ଼ହୋଇ କିପରି ଥରକୁ ଥର ପାଖଆଖ ଗାଁରୁ ଗୋଟି ପିଲାମାନଙ୍କୁ ଜଙ୍ଗଲକୁ ଟେକି ନେଇଆସି ପୁଣି ଛାଡ଼ିଲା । ମଣିଷମାନେ ବାଘ ଶିକାର 'କରିବାକୁ ବଡ଼ ବଡ଼ ଶିକାରୀମାନଙ୍କୁ ଡକାଇଛନ୍ତି । ଅଳ୍ପ ଦିନ ଭିତରେ ସେମାନେ ଆସି ଜଙ୍ଗଲରେ ପହଞ୍ଚିବେ, ଏଥିରେ ମିଛକଥା କିଛି ନାହିଁ ।" ମଣିଷମାନଙ୍କ ବିଚାର ଓ ଅନ୍ୟାନ୍ୟ ଘଟଣା ଶୁଣିବାକୁ ସେତେବେଳକୁ ନିଜ ସେପାରି ଜଙ୍ଗଲର ସବୁ ପଶୁପକ୍ଷୀ ଆସି କୁଆମାନଙ୍କ ପାଖରେ ପହଞ୍ଚି ଯାଇଥିଲେ ।

କୁଆମାନେ ତ ସବୁବେଳେ ମଣିଷମାନଙ୍କ ପାଖରେ ଗାଁ ଓ ସହର-ମାନଙ୍କରେ ଚଳପ୍ରଚଳ ହୁଅନ୍ତି । ତେଣୁ ମଣିଷମାନଙ୍କର ଭାଷା ବୁଝିବାରେ ସେମାନଙ୍କୁ କିଛି ଅସୁବିଧା ହୁଏ ନାହିଁ । କୁଆମାନେ ପୁଣି ଥରେ କହିଲେ ଯେ— ମଣିଷମାନେ ସହରକୁ ଖବର ଦେଇ ଭଲ ଶିକାରୀମାନଙ୍କୁ ଡକାଇଛନ୍ତି । ପଶୁପକ୍ଷୀମାନେ ବିସ୍ମୟରେ ଆଁ କରି କୁଆମାନଙ୍କ କଥା ଶୁଣୁଥିଲେ ।

ଏ ଖବର ଶୁଣିବା ପରେ ମହାବଳବାଘ ଓ ଅନ୍ୟ ବାଘମାନଙ୍କର ମନ ବହୁତ ଖରାପ ହୋଇଗଲା । ମହାବଳବାଘର ରଜା ହେବାର ନିଶା ଛାଡ଼ିଗଲା । ଆଜି ସେ ତା'ର ଭୁଲ ବୁଝିପାରିଲା । ନିଜ ନିଜ ଭିତରେ ଏକତା ରଖି କେଡ଼େ ଆରାମରେ କେତେ ସୁଖ ଶାନ୍ତିରେ ମିଳିମିଶି ସେମାନେ ଏଡ଼େବଡ଼ ସୁନ୍ଦର

ଜଙ୍ଗଲଟାରେ ରହିଆସିଥିଲେ । ରାଜା ହେବାକୁ ମନକରି ସେ ଓ ତାର ଜାତିଭାଇ ବାଘମାନେ ସମସ୍ତେ ମହା ବିପଦରେ ପଡ଼ିଲେ ।

ଏମିତି ଚିନ୍ତା କରି କରି ମହାବଳବାଘ ଖାଇବା ପିଇବା ଛାଡ଼ିଦେଲା । ତପରଦିନ ସେ ତା'ର ପାଖ ବାଘମାନଙ୍କୁ ଡାକି କହିଲା, "ଦେଖ, ଏସବୁ ଘଟଣା ଶୁଣିବା ପରେ ମୋର ଆଉ ରଜା ହେବାର ଇଚ୍ଛାନାହିଁ । ତୁମେମାନେ ଏପଟ ଜଙ୍ଗଲର ସବୁ ପଶୁପକ୍ଷୀମାନଙ୍କୁ ଡାକ । ଆମେ ସମସ୍ତେ ସାଙ୍ଗହୋଇ ସିଂହରାଜାଙ୍କ ପାଖକୁ ଯିବା । ଆମର ଭୁଲପାଇଁ କ୍ଷମା ମାଗିବା । ମୋ ମନରେ ଏବେ ଆଉ କୌଣସି ପ୍ରକାର ରାଗ ବା ହିଂସାଭାବ ନାହିଁ । ଆଗରୁ ଆମେ ମିଳିମିଶି ଯେପରି ସ୍ୱାଧୀନ ଭାବରେ ଚଳୁଥିଲୁ, ସମସ୍ତେ ପୁଣି ମିଳିମିଶି ସେପରି ଚଳିବା ।

ମହାବଳବାଘର କଥା ଶୁଣିବା ପରେ ସେଠାରେ ଥିବା ସବୁ ପଶୁପକ୍ଷୀ ଆନନ୍ଦ କୋଳାହଳ କରି ନାଚିଗଲେ । ତାପରେ ସମସ୍ତେ ବେଶ୍ ଗୋଟିଏ ବଡ଼ ପଟୁଆର କରି 'ସିଂହରାଜାଙ୍କର ଜୟ' 'ଭାଲୁଆନନାର ଜୟ' ରାସ୍ତାଯାକ ଏଇଭଳି ଜୟଗାନ କରିକରିକା ସିଂହରାଜାଙ୍କ ଗୁମ୍ଫା ପାଖେ ଯାଇ ପହଞ୍ଚିଗଲେ ।

ସିଂହରାଜା ଓ ତାର ପାଖ ସିଂହମାନେ, ଭାଲୁଆନନା ଓ ଅନ୍ୟ ଭାଲୁଆ ସିପାହିମାନେ, ଜଗୁଆଳି କୁକୁରମାନେ ହଠାତ୍ ଏପରି କୋଳାହଳ ଶୁଣି ଟିକେ ସତର୍କ ହୋଇଯାଇଥିଲେ । କିନ୍ତୁ କେତେଟା ଡାମରାକୁଆ ଓ ଚାଗ ଉଡ଼ିଆସି ଏ ଖୁସି ଓ ଆନନ୍ଦର ଖବର ସମସ୍ତଙ୍କୁ ଆଗଜୁରା କହିଦେଲେ । ସିଂହରାଜା ଓ ଭାଲୁଆନନା ଉଭୟେ ଉଭୟଙ୍କ ମୁହଁକୁ ଚାହିଁ ଭାରି ଖୁସିହୋଇଗଲେ । ତାପରେ ଚାଗମାନେ ଉଡ଼ି ଉଡ଼ି ଜଙ୍ଗଲ ସାରା ବୁଲି ଅନ୍ୟ ସବୁ ପଶୁପକ୍ଷୀଙ୍କୁ ମଧ୍ୟ ଏ ଖବର କହିଦେଲେ ।

ମହାବଳବାଘ, ତାଙ୍କ ଦଳ ଓ ଅନ୍ୟ ପଶୁପକ୍ଷୀମାନଙ୍କର ପଟୁଆର ଆସି ସିଂହରାଜାର ଗୁହା ପାଖରେ ପହଞ୍ଚିଗଲା । ସିଂହରାଜାର ମନ୍ତ୍ରୀ ମହାବଳ-ବାଘ କାନ୍ଦ କାନ୍ଦ ହୋଇ ଆସି ସିଂହରାଜାର ଗୋଡ଼ତଳେ ପଡ଼ି ନିଜର ଭୁଲପାଇଁ କ୍ଷମା ମାଗିଲା । ଅନ୍ୟ ପଶୁପକ୍ଷୀମାନେ ମଧ୍ୟ ନିଜ ନିଜ ଭିତରେ ସବୁକଥା ଟିକ୍ ବୁଝାବୁଝି କରିନେଲେ ।

ସେ ବିରାଟ ଜଙ୍ଗଲ ଭିତରେ ପୁଣି ଶାନ୍ତି ଓ ଆନନ୍ଦ ଫେରିଆସିଲା । ଦୁଇ-ପାଟ ଜଙ୍ଗଲରେ ବନ୍ଦୀ ଅବସ୍ଥାରେ ଥିବା ପଶୁପକ୍ଷୀମାନଙ୍କୁ ମୁକ୍ତ କରିଦିଆଗଲା ।



ଜଙ୍ଗଲସୀମାର ବାଲୁଆମାନଙ୍କୁ ଖବର ପଠାଇ ସେମାନଙ୍କୁ ବରଖାସ୍ତ କରାଯାଇଥିବା କାମ ବନ୍ଦକରିଦିଆଗଲା । ଏଥର ଆସନ୍ତୁ ନା ଶିକାରୀମାନେ—ଜଙ୍ଗଲର ସୀମା

ପାଖରୁ ବାଘମାନଙ୍କୁ ଖୋଜାଖୋଜି କରି ବଳେ ଫେରିଯିବେ ! ଏତେ ବଡ଼ ଘଞ୍ଚ ଜଙ୍ଗଲ ଭିତରେ ପଶିବାକୁ କ'ଣ କେବେ ସାହସ କରିବେ ?

ସେଦିନ ଥିଲା ଜଙ୍ଗଲର ଗୋଟିଏ ଅତି ଆନନ୍ଦର ଦିନ । ଭଲୁଆନନାର ପରିଚାଳନାରେ ସବୁପ୍ରକାର ପଶୁଙ୍କର ପିଲାମାନେ ହାତରେ ଫୁଲ ତୋଡ଼ାମାନ ଧରି, ଧାଡ଼ିକରି ଜଙ୍ଗଲସାରା ଦୌଡ଼ି ଦୌଡ଼ି ବୁଲିଆସିଲେ । ସେମାନେ ଗାଉ-ଥାଆନ୍ତି—"ଆମେମାନେ ସ୍ୱାଧୀନ ଜଙ୍ଗଲ ରାଜ୍ୟର ପିଲା, ଆମେ ଏକ, ଆମର ମନ ଏକ, ଆମର କଥା ଏକ, 'ଆମର କାମ ଏକ, ଆମେ ସମସ୍ତେ ଭାଇ ଭାଇ ।

ଆଗେ ଆଗେ ଠେକୁଆ ପିଲା, ତା ପଛକୁ ମାଙ୍କଡ଼ ହରିଣ, କୁକୁର, ଭାଲୁ, ହାତୀ, ବାଘ, ଭଲୁଆ, ସିଂହ, ଘୋଡ଼ା ଓ ସମ୍ବରଙ୍କ ପିଲା । ସମସ୍ତେ ଧାଡ଼ି ବାନ୍ଧି ଦୌଡ଼ୁଥାଆନ୍ତି । ଜମା ହୋଇଥିବା ପଶୁପକ୍ଷୀମାନେ ଏମାନଙ୍କର ଏ ଦୌଡ଼ ଦେଖି ଅତି ଆନନ୍ଦିତ ହେଉଥାଆନ୍ତି । ପିଲାମାନେ ସତରେ ଭାରି ମନ ଖୁସିରେ ଦୌଡ଼ୁଥାଆନ୍ତି ।

ଜଙ୍ଗଲସାରା ବୁଲି ବୁଲି ଏମାନେ ଯାଇ ସିଂହରାଜାର ଗୁମ୍ଫା ପାଖରେ ପହଞ୍ଚିଲେ । ସିଂହରାଜା ଓ ବାଘମନ୍ତ୍ରୀ ପିଲାମାନଙ୍କୁ ଅତି ଆନନ୍ଦରେ ନିଜ ହାତରେ ମିଠାଇ ଖାଇବାକୁ ଦେଲେ । ପିଲାମାନେ ଆଣିଥିବା ଫୁଲମାଳ ଗୁଡ଼ିକ ସିଂହରାଜା, ବାଘମନ୍ତ୍ରୀ ଓ ଭଲୁଆନନାର ଗଳାରେ ପିନ୍ଧାଇଦେଲେ । ସେଠାରେ ଉପସ୍ଥିତ ଥିବା ସବୁ ପଶୁପକ୍ଷୀ ଆନନ୍ଦରେ କରତାଳି ଦେଲେ । ତା'ପରେ' ସେମାନେ 'ଜଙ୍ଗଲ ରାଜା ପଶୁରାଜ ସିଂହଙ୍କର ଜୟ', 'ବାଘମନ୍ତ୍ରୀଙ୍କର ଜୟ', ଭଲୁଆନନାର ଜୟ' ଏହିପରି ଜୟନାଦ କରି ଆନନ୍ଦ ମନରେ ଯେଝା ଘରକୁ ଫେରିଲେ । ସେହିଦିନଠାରୁ ସବୁ ପଶୁପକ୍ଷୀ ବିରାଟ ଜଙ୍ଗଲ ରାଜ୍ୟରେ ମିଳିମିଶି ମହାଆନନ୍ଦରେ ଓ ସୁଖଶାନ୍ତିରେ ରହିଲେ ।

---